# ସୋମନାଥ ବ୍ରତ କଥା

ଲେଖକ ଓ ପ୍ରକାଶକ :
ପ୍ରାଧ୍ୟାପକ
**ଜାନକୀବଲ୍ଲଭ ମହାନ୍ତି**

ପ୍ରଥମ ସଂସ୍କରଣ
୧୯୮୩

ମୁଦ୍ରାକର :
**ଗୋଦାବରୀଶ ପ୍ରେସ୍**

ମୂଲ୍ୟ : ୪୨–୫୦

# ଆଲୋଚନା

## ଉପକ୍ରମଣିକା—

ଓଡ଼ିଶାର ପୂରପଲ୍ଲୀରେ ପ୍ରଚଳିତ ବହୁଳ ଓଷା ବ୍ରତମାନଙ୍କ ମଧ୍ୟରେ ସୋମନାଥ ବ୍ରତ ଅନ୍ୟତମ । ସୋମନାଥ ବ୍ରତ ଓଡ଼ିଶାର ସମାଜ ଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ଓଡ଼ିଶା ଏକ ଧର୍ମପ୍ରାଣ ରାଜ୍ୟ । ପୂରପଲ୍ଲୀର ସୀମନ୍ତିନୀମାନେ ଏବେ ବି ଘରୁ ପୁଅ ବିଦେଶ କରିଗଲେ ମା' ମଙ୍ଗଳାଙ୍କ ଉଦ୍ଦେଶ୍ୟରେ କହିଥାନ୍ତି, "ମା'ମଙ୍ଗଳା, ମୋ ପୁଅକୁ ଘଣ୍ଟ ଘୋଡ଼େଇ ରଖିଥା ।" ଉତ୍କଳ ସୀମନ୍ତିନୀଙ୍କର ଏହା କେବଳ ମୁହଁର କଥା ନୁହେଁ, ଏହା ତାଙ୍କର ପ୍ରାଣର କଥା – ତାଙ୍କର ଅନ୍ତରର ଭାଷା । ଯେଉଁ ମାଟିରେ ଦେବତା ମାନବକୁ ପ୍ରତି ପଦେ ପଦେ ସାହାଯ୍ୟ କରନ୍ତି, ଯେଉଁ ରାଜ୍ୟର ରାଜାଙ୍କୁ ସାହାଯ୍ୟ କରିବା ପାଇଁ ଦେବତା ଘୋଡ଼ା ଚଢ଼ି ସୁଦୂର କାଞ୍ଚୀ ରାଜ୍ୟକୁ ଯାଇଛନ୍ତି, ସେ ଦେଶ ଯେ ସ୍ୱଭାବତଃ ଧର୍ମପ୍ରାଣ ଦେଶ ହେବ, ଏଥିରେ ଅସ୍ୱାଭାବିକତା ନାହିଁ ।

ଓଡ଼ିଶାରେ ପ୍ରଚଳିତ ଓଷା ବ୍ରତମାନଙ୍କ ସମ୍ବନ୍ଧରେ ଡକ୍ଟର କୁଞ୍ଜବିହାରୀ ଦାଶ ତାଙ୍କର ଲୋକ ରତ୍ନ ସଞ୍ଚୟନରେ କହନ୍ତି :- ଓଷା ବ୍ରତ କୌଣସି ନିର୍ଦ୍ଦିଷ୍ଟ ଲୋକଗୋଷ୍ଠୀର ଏକଚାଟିଆ ନୁହେଁ,

ଏହା ସମଗ୍ର ଲୋକ ସମାଜର । ଏହା ଲୋକ ଜୀବନର ସାରଲ୍ୟ, ସୌକୁମାର୍ଯ୍ୟ, ସହଜ ବିଶ୍ୱାସ ଓ ସୃଷ୍ଟି ଶୀତଳତାର ସ୍ୱାକ୍ଷର ବହନ କରେ । ଏହା ଗ୍ରାମ ବା ଗୃହର କଲ୍ୟାଣ ଲାଗି ପୁରନାରୀ-ମାନଙ୍କର ଏକ ତପସ୍ୟା, ଯାହା କଠୋର ଧୈର୍ଯ୍ୟ, ନିଷ୍ଠା, ସହିଷ୍ଣୁତା, ତିତିକ୍ଷା ଓ ମନର ସଙ୍କଳ୍ପ ଏଥିରୁ ଲାଭ କରିଥାଏ । ସଂଯତ ଚରିତ୍ର ଗଠନରେ ଏହା ସହାୟକ ହୋଇଥାଏ । ଅନ୍ତଃପୁର-ଚାରିଣୀମାନଙ୍କର ସହଯୋଗ ମନୋବୃତ୍ତି ଓ ନିବିଡ଼ ଐକ୍ୟର ଏହା ସୂକ୍ଷ୍ମ ଯୋଗସୂତ୍ର । ଗ୍ରାମରେ ଆଧ୍ୟାତ୍ମିକ ବାତାବରଣ ସୃଷ୍ଟିରେ ଏହା ସାହାଯ୍ୟ କରିଥାଏ ।

## ସୋମନାଥ ବ୍ରତ ପାଳନର ବିଧି—

ଭାଦ୍ରବମାସ ଶୁକ୍ଳପକ୍ଷ ଷଷ୍ଠୀଦିନ ସୋମନାଥ ବ୍ରତ ପାଳନ କରାଯାଏ ଓ ଦଶହରା ଦିନ ତାହା ଉଜୁଆଁ ହୁଏ । ଅନେକ ବ୍ରତରେ ପୁରୁଷ ଅଂଶ ଗ୍ରହଣ କରୁଥିଲେ ହେଁ, ଏହି ବ୍ରତ ନାରୀମାନଙ୍କର ବ୍ରତ । ଏଥିରେ ଶିବ ବା ସୋମନାଥଙ୍କର ପୂଜା କରାଯାଏ । ବ୍ରତଚାରିଣୀମାନେ ସେଦିନ ଶୁଦ୍ଧପୂତ ହୋଇ ଶିବଙ୍କ ଉଦ୍ଦେଶ୍ୟରେ ଉପବାସ କରନ୍ତି ଓ ବ୍ରତ ପୂଜା ଶେଷହେଲା ପରେ, ପୂଜା ଅନ୍ତେ ଉତ୍ସର୍ଗ ହୋଇଥିବା ପ୍ରସାଦ ଗ୍ରହଣ କରନ୍ତି । ପୂଜାରେ ଲାଗି କରାଯାଇଥିବା ଗୁଆ ଓ ଶ୍ୱେତ ବର୍ଣ୍ଣର ବ୍ରତ ସୂତାକୁ ବ୍ରତଚାରିଣୀମାନଙ୍କ ମୁଣ୍ଡ ବା ହାତରେ ଛୁଆଁଇ ରଖିଦିଅନ୍ତି । ଦଶହରାଦିନ ସେହି ଗୁଆ ଓ ସୂତାକୁ ପୂର୍ବ ବିଧିରେ ପୂଜାକରି ସେହି ବ୍ରତ ଓ ସୂତାକୁ ପାଣିରେ ପକାଇଦିଅନ୍ତି । କୌଣସି ମନୋବାଞ୍ଛା ପୂରଣ ଉଦ୍ଦେଶ୍ୟରେ ଏହି ବ୍ରତ କରାଯାଏ ।

ସୋମନାଥ ବ୍ରତ କଥାରେ ମହାଦେବ ଶିବଙ୍କର ଅଭିଶାପରେ ଶରୀରକୁ କୁଷ୍ଠରୋଗବ୍ୟାଧିର ଆକ୍ରମଣ ଏବଂ ତାଙ୍କରି ପ୍ରସାଦରେ ରୋଗମୁକ୍ତିର ବର୍ଣ୍ଣନା ଥିବାରୁ, ସାଧାରଣତଃ ଏହି ବ୍ରତରେ ପରିବାର ବର୍ଗଙ୍କର ରୋଗମୁକ୍ତ ଜୀବନ ବା ଜୀବନରେ ବ୍ୟାଧି ମୁକ୍ତିର ଉଦ୍ଦେଶ୍ୟରେ ବ୍ରତଚାରିଣୀମାନେ ଏହି ସୋମନାଥବ୍ରତ ପାଳନ କରିଥାନ୍ତି ।

## ସୋମନାଥ ବ୍ରତ କଥା—

ସୋମନାଥ ବ୍ରତ ପାଳନ ସହିତ ସୋମନାଥ ବ୍ରତ କଥା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ବସ୍ତୁତଃ ବ୍ରତ ପୂଜାରେ ଏହି ବ୍ରତ କଥା ପାଠକରାଯାଏ । ଏହାକୁ ବ୍ରତଚାରିଣୀମାନଙ୍କ ମଧ୍ୟରୁ କେହି ଅଥବା ପୁରପଲ୍ଲୀର କେହି ବ୍ରାହ୍ମଣ ପୂଜକ ପାଠ କରନ୍ତି । ବ୍ରତଚାରିଣୀ-ମାନେ ଉପସ୍ଥିତ ରହି ଏହି ବ୍ରତ କଥା ଶୁଣନ୍ତି ।

## ବ୍ରତ କଥାର ସାରାଂଶ—

ମାଳବ ରାଜ୍ୟର ରାଜଧାନୀ ପାଟଳୀପୁର । ସେଠାର ରାଜା ଥିଲେ ବୀର ବସନ୍ତମାଧବ । ଦିନେ କେତେ ଜଣ ବସ୍ତ୍ର ବ୍ୟବସାୟୀ ରାଜାଙ୍କର ଦ୍ୱାରସ୍ଥ ହେଲେ । ସେମାନେ ରାଜାଙ୍କୁ ସୋମନାଥ ବ୍ରତ ପୂଜା କରିବାକୁ କହିଲେ, ମାତ୍ର ସୋମନାଥ ବ୍ରତରେ ଅଳ୍ପ ଭୋଜନ, ଗୁଆ ପଥରର ବ୍ୟବହାର ଏବଂ ଅତ୍ୟନ୍ତ ଅଳ୍ପ ଖର୍ଚ୍ଚ ଆବଶ୍ୟକ ହେଉଥିବାରୁ ରାଜା ଏପରି ପୂଜା କରିବାକୁ ଆଗ୍ରାହ୍ୟ କଲେ । ସୋମନାଥ ବ୍ରତ ମହାଦେବ ଶିବଙ୍କର ଉପାସନା ଉଦ୍ଦେଶ୍ୟରେ କରାଯାଏ । ଏଥିରେ ଶିବଙ୍କର କ୍ରୋଧ ହେଲା । ସେ ଅଭିଶାପ ଦେଲେ । ରାଜା ବୀର ବସନ୍ତମାଧବ କୁଷ୍ଠ ରୋଗରେ ଆକ୍ରାନ୍ତ

ହେଲେ । ରାଜ୍ୟର ଶାସନ ମନ୍ତ୍ରୀଙ୍କ ଉପରେ ଦେଇ, ରାଜା ବନଗାମୀ ହେଲେ । ମନ୍ତ୍ରୀ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣକଲେ । ରାଣୀଙ୍କୁ ଅବହେଳା କଲେ । ଏହିପରି କିଛି କାଳ ବିତିଗଲା । ପୁଣି ଥରେ ରାଣୀ ବସ୍ତ୍ର ବନ୍ଦେବତାମାନଙ୍କଠାରୁ ସୋମନାଥ ବ୍ରତର ମହାତ୍ମ୍ୟ ଶୁଣିବାକୁ ଇଚ୍ଛିଲେ । ରାଣୀ ସୋମନାଥ ବ୍ରତ କଲେ । ରାଜା ବନମାହାତ୍ୟ କୁଷ୍ଠ ରୋଗରୁ ମୁକ୍ତି ଲାଭକରି ରାଜ୍ୟକୁ ବାହୁଡି ଆସିଲେ । ସେଠାରେ ଦୁଷ୍କର୍ମକାରୀମାନଙ୍କୁ ଦଣ୍ଡିତକରି ପୁଣି ତାଙ୍କର ଶାସନ ପ୍ରତିଷ୍ଠାକଲେ ।

## ସୋନାଥ ବ୍ରତକଥାର ସୃଷ୍ଟି:—

କେବେ ଏହି ସୋମନାଥ ବ୍ରତକଥାର ସୃଷ୍ଟି ହେଲା, ଏ ପର୍ଯ୍ୟନ୍ତ ତହିଁର ସିଦ୍ଧାନ୍ତ ହୋଇପାରିନାହିଁ । ତେବେ ଉତ୍କଳ ମହାବିଦ୍ୟାଳୟର ଭୂତପୂର୍ବ ଓଡ଼ିଆ ତଥା ସଂସ୍କୃତ ବିଭାଗର ପ୍ରଫେସର ସ୍ୱର୍ଗତ ରାୟ ବାହାଦୁର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି କହନ୍ତି.—"The writer has not mentioned his name in this Vrata. There are many Vratas (Vowed Observauces) in Oriya prose of which this is in my opinion the oldest. It belongs either to the 15th or 16th century."

ସୋମନାଥ ବ୍ରତ କଥାର ନିର୍ଦ୍ଦିଷ୍ଟ ଜନ୍ମକାଳ ଅବଧି ଜଣାପଡ଼ି ନଥିଲେ ହେଁ, ସ୍ୱର୍ଗତ ଡକ୍ଟର ପ୍ରଫେସର ମହାନ୍ତିଙ୍କର ଉଲ୍ଲିଖିତ ମତକୁ ଏକାବେଳକେ ଅବଜ୍ଞା କରିହେବ ନାହିଁ । ଏକେ ତ ଏହି ମତ ଆଜକୁ ପ୍ରାୟ ଚଉଶ ବର୍ଷ ତଳର ମତ ।

ଅକଧିନ୍ତୁ ସୋମନାଥ ବ୍ରତ କଥା ଠାରୁ ପ୍ରାଚୀନତର ବ୍ରତକଥା ମିଳିବା ପର୍ଯ୍ୟନ୍ତ, ଏହି ବ୍ରତକଥାକୁ ପ୍ରାଚୀନତମ ରୂପେ ସ୍ୱର୍ଗତ ମହାନ୍ତି ଗ୍ରହଣ କରିଥିବା ସମୀଚୀନ ।

ସ୍ୱର୍ଗତ ମହାନ୍ତି ଏହି ବ୍ରତକଥାକୁ ପଞ୍ଚଦଶ ବା ଷୋଡ଼ଶ ଶତାବ୍ଦୀର ସୃଷ୍ଟି ବୋଲି କହିଛନ୍ତି । ତାଙ୍କର ଏହି ମତର ଅନ୍ତରାଳରେ ଯୁକ୍ତି ଥିବା ଭଳି ମନେହୁଏ । ସୋମନାଥ ବ୍ରତ-କଥାରେ ଶିବଙ୍କର ଉପାସନା ସୂଚିତ । ଶିବ ଯେପରି ଏକମାତ୍ର ଉପାସ୍ୟ ଦେବତା ଯେ କି ମାନବକୁ ଭୋଗଯୁକ୍ତ କରିପାରନ୍ତି ଏବଂ ଭୋଗମୁକ୍ତ କରିପାରନ୍ତି । ତେଣୁ ଅନୁମାନ ହୁଏ, ଏହା ଏକ ସମୟର ରଚନା, ଯେତେବେଳେ ଶିବ ଉପାସନା ଉପରେ ଦେଶରେ ଅଧିକ ଆସ୍ଥା ଥିଲା । ଏ ସ୍ଥାନରେ ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବନାହିଁ ଯେ, ୧୫୧୦ ମସିହାରେ ଚୈତନ୍ୟ ଦେବ ଉତ୍କଳ ଆଗମନ କରିଥିଲେ ଏବଂ ତାଙ୍କର ଆଗମନ ପରେ, ସମଗ୍ର ଉତ୍କଳ ଖଣ୍ଡରେ ବୈଷ୍ଣବଧର୍ମର ପ୍ଲାବନ ସୃଷ୍ଟି ହୋଇଥିଲା । ଏହି ପ୍ଲାବନ ଫଳରେ ଉତ୍କଳର ଘରେ ଘରେ ଯେ କୃଷ୍ଣମୂର୍ତ୍ତିର ଉପାସନା ଚାଲିଲା ତା ନୁହେଁ, ବୈଷ୍ଣବ ସାହିତ୍ୟ ସୃଷ୍ଟି ପାଇଁ ବାତାବରଣ ଅନୁକୂଳ ହୋଇଗଲା । ପ୍ରାୟ ଦୁଇଶହ ବର୍ଷ ପର୍ଯ୍ୟନ୍ତ ଉତ୍କଳରେ ଏହି ବୈଷ୍ଣବ ସାହିତ୍ୟର ସୃଷ୍ଟି ଓ ପୁଷ୍ଟି ହୋଇଥିଲା । ତେଣୁ ଯଥାସମ୍ଭବ, ସୋମନାଥ ବ୍ରତକଥା ଏହାର ଅବ୍ୟବହିତ ପୂର୍ବର ରଚନା ଅଥବା ବୈଷ୍ଣବ ସାହିତ୍ୟର ସମ୍ୟକ୍ ପରିପୁଷ୍ଟି ହେବାର ଅଳ୍ପ ପୂର୍ବର ରଚନା । ପୁଣି ଏହି ଯୁକ୍ତିକୁ 'ସୋମନାଥ ବ୍ରତ କଥା'ରେ ବ୍ୟବହୃତ ଭାଷା ମଧ୍ୟ କେତେକାଂଶରେ ସମର୍ଥନ କରୁଅଛି । ସୋମନାଥ ବ୍ରତ

କଥାରେ ବ୍ରତେନ, ମାନସିକ ପ୍ରଭୃତି ପ୍ରାଚୀନ ଶବ୍ଦ ଯେପରି ବ୍ୟବହୃତ, ବେଠ, କାପୁଡ଼, (କପଡ଼ା ଶବ୍ଦରୁ) ପ୍ରଭୃତି କେତେକ ଯାବନିକ ଓ ଯବନ ଭାଷା ପ୍ରଭାବିତ ଶବ୍ଦ ମଧ୍ୟ ବ୍ୟବହୃତ । ୧୫୨୬ ରେ ପ୍ରଥମ ପାନିପଥ ଯୁଦ୍ଧ ହୁଏ ଏବଂ ଏହିଠାରୁ ହିଁ ସମଗ୍ର ଭାରତ ଖଣ୍ଡରେ ମୋଗଲ ଶାସନ ପ୍ରତିଷ୍ଠିତ ହୁଏ । ତେଣୁ କେତେକ ଯାବନିକ ଶବ୍ଦ ବିଶିଷ୍ଟ ଭାରତୀୟ ଭାଷାରେ ସ୍ଥାନ ପାଇଥିବା ସ୍ୱାଭାବିକ । ଏହି ଦୃଷ୍ଟିରୁ 'ସୋମନାଥ ବ୍ରତ କଥା'କୁ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗର ରଚନା ବୋଲି ଗ୍ରହଣ କରିବା ସମୀଚୀନ ମନେହୁଏ । ଏହି ଯୁକ୍ତିକୁ ସମସାମୟିକ ମାଦଳାପାଞ୍ଜିର ଭାଷା ମଧ୍ୟ ଯଥେଷ୍ଟ ସମର୍ଥନ କରୁଅଛି । ସୋମ ବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବଙ୍କ ସମୟର ମାଦଳାପାଞ୍ଜିର ଭାଷା ଅପେକ୍ଷାକୃତ ଆଧୁନିକ । ଏହି ସମୟର ମାଦଳାପାଞ୍ଜିର ଭାଷାରେ କ୍ରିୟାର ପ୍ରୟୋଗ ପ୍ରାୟ ଆଧୁନିକ ଧରଣ ହୋଇଅଛି । ବାକ୍ୟ ସଂଯୋଜନା ମଧ୍ୟ ଅଧିକ ଆଧୁନିକ । ତେଣୁ 'ସୋମନାଥ ବ୍ରତକଥା'ର ଭାଷା ଏହି ଭାଷାଠାରୁ ଅପେକ୍ଷାକୃତ ପ୍ରାଚୀନ ଥିଲାପରି ମନେହୁଏ ।

## ସୋମନାଥ ବ୍ରତ କଥାର 'ଚରିତ୍ର' ଆଲୋଚନା:---

ସୋମନାଥ ବ୍ରତ କଥାର ଆଭିମୁଖ୍ୟ ହେଉଛି ଶିବଙ୍କର ମହାତ୍ମ୍ୟ ପ୍ରତିପାଦନ କରିବା । ତେଣୁ ଏଥିରେ ଗଳ୍ପାଂଶର ବୈଚିତ୍ର୍ୟ ବା ଚରିତ୍ର ଚିତ୍ରଣର ବୈଶିଷ୍ଟ୍ୟ ଆଶା କରିବା ସମ୍ଭବ ନୁହେଁ । ମାତ୍ର ସୋମନାଥ ବ୍ରତକଥାରେ ଯେଉଁ ସ୍ୱଳ୍ପ କେତୋଟି ଚରିତ୍ର ଆମମାନଙ୍କ ଆଖି ଆଗରେ ଦେଖାଦିଅନ୍ତି, ସେ ମଧ୍ୟରୁ ପ୍ରତ୍ୟେକଟି ଚରିତ୍ର ଉଦବୋଗ୍ୟ ।

ସୋମନାଥ ବ୍ରତକଥାର ଆଲୋଚ୍ୟ ଚରିତ୍ରଗୁଡ଼ିକ ହେଲେ, ରାଜା ବୀର ବିକ୍ରମାଦିତ୍ୟ, ମହାରାଣୀ, ରାଜପୁତ୍ର ବୀରଭଦ୍ର ଓ ରାଜକନ୍ୟା ମଧୁମତୀ ।

ରାଜା ବୀରବିକ୍ରମ ସୋମନାଥ ବ୍ରତକଥାର ମୁଖ୍ୟ ଚରିତ୍ର । ସେ ସୁଶାସକ ଥିଲେ । ତାଙ୍କ ଶାସନରେ ପ୍ରଜାମାନେ ସୁଖ-ଶାନ୍ତିରେ ଚଳୁଥିଲେ । ବ୍ୟାଧିମୁକ୍ତ ହେଲାପରେ ରାଜା ସ୍ୱଦେଶକୁ ଫେରି, ପୁଣି ତାଙ୍କର ଶାନ୍ତିପୂର୍ଣ୍ଣ ଶାସନ ପ୍ରତିଷ୍ଠା କରିଛନ୍ତି । କୁଷ୍ଠ ରୋଗାକ୍ରାନ୍ତ ହେବା ପରେ ନିଜେ ରାଜ୍ୟଶାସନ କରିବା ଅସମ୍ଭବ ବୋଲି ଉପଲବ୍ଧି କରି ସେ ମନ୍ତ୍ରୀଙ୍କ ଉପରେ ରାଜ୍ୟଭାର ଅର୍ପଣ କରି ରାଜ୍ୟ ତ୍ୟାଗ କରିଛନ୍ତି । ଶାସନ ତତ୍ପରତାର ଏହି ଉପଲବ୍ଧି ହିଁ ତାଙ୍କୁ ଜଣେ ସୁଶାସକ ଭାବରେ ପରିଚିତ କରାଏ । ବ୍ୟାଧିମୁକ୍ତ ହୋଇ ସ୍ୱଦେଶକୁ ଫେରିଆସିବା ପରେ ସେ ଦୁଷ୍କୃତମାନଙ୍କ ପ୍ରତି ଶାସ୍ତି ବିଧାନ କରିଛନ୍ତି—ମଙ୍ଗଳ ସାଧନକାରୀଙ୍କୁ ପୁରସ୍କାର ପ୍ରଦାନ କରିଛନ୍ତି ।

ବୀର ବିକ୍ରମାଦିତ୍ୟଙ୍କ ରାଣୀ ଜଣେ ପତିବ୍ରତା ରମଣୀ ରୂପେ ଚିତ୍ରିତ । ରାଜା ବ୍ୟାଧିଗ୍ରସ୍ତ ହେବା ପରେ ସେ ସମସ୍ତଙ୍କ ଦ୍ୱାରା ଅପମାନିତ ଓ ଲାଞ୍ଛିତ ହୋଇଛନ୍ତି । ମାତ୍ର ଏଥିରେ ସେ ପ୍ରତିବାଦ କରି ନାହାନ୍ତି । ସମସ୍ତ କଷ୍ଟବାଧାକୁ ସେ ମଥା ପୋତି ସହ୍ୟ କରିନେଇଛନ୍ତି । ପତିଙ୍କର ମୁକ୍ତି ଲାଗି ରାଣୀ ବ୍ରାହ୍ମଣୀମାନଙ୍କଠାରୁ ସୋମନାଥ ବ୍ରତର ମହାତ୍ମ୍ୟ ଶୁଣି, ବ୍ରତପୂଜା କରିଛନ୍ତି । ତାଙ୍କରି ବ୍ରତ ପୂଜାରେ ହିଁ ମହାଦେବ ସନ୍ତୁଷ୍ଟ ହୋଇ ରାଜାଙ୍କୁ ବ୍ୟାଧିମୁକ୍ତ କରିଛନ୍ତି । ନାରୀ ପୁରୁଷର ଅର୍ଦ୍ଧାଙ୍ଗିନୀ । ପୁରାଣ

ପୃଷ୍ଠାରେ ନାରୀ ପୁରୁଷ ଜୀବନକୁ ରକ୍ଷା କରିବା ପାଇଁ ସଦା ସର୍ବଦା ଅକୁଣ୍ଠିତ ଚିତ୍ତରେ ଅଗ୍ରସର ହୋଇଛନ୍ତି । ସାବିତ୍ରୀ ସତ୍ୟବାନଙ୍କ ଜୀବନ ଫେରାଇ ଆଣିଛନ୍ତି—ସୀତା, ରାମଚନ୍ଦ୍ରଙ୍କର ନାମରେ ଚିତ୍କାର ଶୁଣି ତିନିଗାର ଝାପି ବନରେ କବଳରେ ପଡ଼ିଛନ୍ତି । ମାତ୍ର ପ୍ରତ୍ୟେକ ମର୍ଯ୍ୟାଦାରେ ପୁରୁଷ ପ୍ରତି ନାରୀର ତ୍ୟାଗର ଚରିତ୍ର ମୂର୍ତ୍ତିମନ୍ତ ହୋଇ ଉଠିଛି । ସ୍କନ୍ଦ ପୁରାଣର ଏହି ଚରିତ୍ର 'ସୋମନାଥ ବ୍ରତକଥା'ର ସ୍ୱଳ୍ପ କଳେବର ମଧ୍ୟରେ ରାଣୀଙ୍କ ଚରିତ୍ର ମଧ୍ୟରେ ପ୍ରତିଫଳିତ ହୋଇଅଛି ।

ରାଜପୁତ୍ର ବୀରଭଦ୍ର ଏକ ଅପୂର୍ବ ଚରିତ୍ର । ପିତା ବ୍ୟାଧି-ଗ୍ରସ୍ତ ହେବା ସମୟରେ ପୁତ୍ର ଅଶେଷ ଦୁଃଖକଷ୍ଟ ସ୍ୱୀକାର କରିଛନ୍ତି । ପିତାଙ୍କ ସଙ୍ଗରେ ବନଗାମୀ ହୋଇଛନ୍ତି । ପିତାଙ୍କ ସହ ଜୀର୍ଣ୍ଣ କୁଟୀରରେ ବାସ କରିଛନ୍ତି । ଭିକ୍ଷାକରି ପିତାଙ୍କୁ ବଞ୍ଚାଇ ରଖିଛନ୍ତି । ଏହି ବର୍ଣ୍ଣନା ମଧ୍ୟରେ ସ୍କନ୍ଦ ସମାଜର ଅବିଭକ୍ତ ପାରିବାରିକ ଜୀବନର ପିତୃଭକ୍ତିର ଚିତ୍ର ପ୍ରାଞ୍ଜଳ ।

ରାଜକନ୍ୟା ମଧୁମଞ୍ଜି । ପିତାଙ୍କର ସୁଷ୍ଠୁ ଶାସନରେ ସେ ଥିଲେ ଅଳିଅଳ ରାଜଜେମା । ମାତ୍ର ପିତାଙ୍କର ରାଜ୍ୟ ପରିତ୍ୟାଗ ପରେ ସେ ମାଆଙ୍କ ନିକଟରେ ରହିଥିଲେ ମଧ୍ୟ ଦୁଃଖକଷ୍ଟରେ ଜୀବନ ଯାପନ କରିଛନ୍ତି । ମାଆଙ୍କ ସହ ଲାଞ୍ଛନା ସହ୍ୟ କରିଛନ୍ତି । ପିତାମାତାଙ୍କ ପ୍ରତି ତାଙ୍କର ଅତ୍ୟଧିକ ମମତା । ସେହି ମମତାର ଆତିଶଯ୍ୟରେ ହେ ନିଜର ଦୁଃଖକଷ୍ଟ ପାଶୋରି ଦେଇଛନ୍ତି ।

ମନ୍ତ୍ରୀ ସମୀରଣ୍ଡା ଜଣେ ନିଷ୍ଠୁର ବ୍ୟକ୍ତି ରୂପେ ପରିଚିତ । ସେ ସ୍ୱାର୍ଥପର ଓ ଅହଙ୍କାରୀ । ରାଜା ବ୍ୟାଧିଗ୍ରସ୍ତ ହୋଇ ରାଜ୍ୟ ତ୍ୟାଗ କରିବା କରେ, ମନ୍ତ୍ରୀ ପରିସ୍ଥିତିର ସୁଯୋଗ ନେଇ ରାଣୀ

ଓ ରାଜକନ୍ୟାଙ୍କୁ ନାନା ଦୁଃଖ, ଯନ୍ତ୍ରଣା ଦେଇଛନ୍ତି । ରାଣୀଙ୍କୁ ଅପମାନ ଦେଇଛନ୍ତି । କପଟ ମିଥ୍ୟାବାଦୀ ସେ । ରାଜା ବ୍ୟାଧିମୁକ୍ତ ହୋଇ ସ୍ୱରାଜ୍ୟକୁ ବାହୁଡ଼ି ଆସିବା ପରେ, ମନ୍ତ୍ରୀ ତାଙ୍କୁ ରାଣୀ ଓ ରାଜକନ୍ୟାଙ୍କ ସମ୍ବନ୍ଧରେ ମିଥ୍ୟା ସମ୍ବାଦ ଦେଇଛନ୍ତି । ମାତ୍ର "ପୁଣ୍ୟର ଜୟ ଓ ପାପର କ୍ଷୟ," ନ୍ୟାୟ ବଳରେ ଏହି ମାଡରେ ସେ ଆପଣା ଦୁଷ୍କର୍ମର ପ୍ରତିଫଳ ଲାଭ କରିଛନ୍ତି ।

ମୋଟ ଉପରେ 'ସୋମନାଥ ବ୍ରତ କଥା'ର ପ୍ରତ୍ୟେକଟି ଚରିତ୍ର ଜୀବନ୍ତ ଓ ଉପଭୋଗ୍ୟ । ଅତି ସୂକ୍ଷ୍ମ ରେ ଚରିତ୍ରଗୁଡ଼ିକର ବର୍ଣ୍ଣନା କରି ମଧ୍ୟ, ଲେଖକ ପ୍ରତ୍ୟେକଙ୍କର ନିଜସ୍ୱ ଯେ ବଜାୟ ରଖି ପାରିଛନ୍ତି, ଏହା ହିଁ ତାଙ୍କର ନିପୁଣ ଲେଖନୀର ପରିଚୟ ହିଏ ।

## ସୋମନାଥ ବ୍ରତ କଥାର 'ଭାଷା' ବିଚାର—

ସୋମନାଥ ବ୍ରତ କଥାର ଭାଷା ଶ୍ରୋତା ଓ ପାଠକଙ୍କ ପ୍ରତି ଯେପରି ଆନନ୍ଦପ୍ରଦ, ଆଲୋଚକ ଲାଗି, ତାହା ସେହିପରି ବିସ୍ମୟପ୍ରଦ । ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ଏହି ବ୍ରତକଥାକୁ ପ୍ରାଚୀନ ବ୍ରତ କଥା ଏବଂ ୧୫ଶ ଶତାବ୍ଦୀର ପୂର୍ବ କାଳର ରଚନା ବୋଲି ଗ୍ରହଣ କରିଅଛନ୍ତି । ପ୍ରାଚୀ ସମିତି ତରଫରୁ ପ୍ରକାଶିତ 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ'ରେ 'ସୋମନାଥ ବ୍ରତ କଥା'ର ଯେଉଁ କିୟଦଂଶ ଦେଖିବାକୁ ମିଳେ, ତାହାର ଭାଷା ଅପେକ୍ଷାକୃତ ପ୍ରାଚୀନ । ମାତ୍ର 'ସୋମନାଥ ବ୍ରତ କଥା'ର ଅନ୍ୟ ଯେଉଁ ସଂସ୍କରଣମାନ ଦେଖିବାକୁ ମିଳେ, ତହିଁରେ ଭାଷାର ପ୍ରାଚୀନତା ବିଶେଷ ଭାବରେ ଉପଲବ୍ଧ ହୁଏନାହିଁ । ଏଥିରୁ

ଅନୁମିତ ହୁଏ, ଅନେକ କଥାକାର ଏଇ ବ୍ରତକଥାର ବହୁ ସଂସ୍କରଣ କରିଯାଇଛନ୍ତି ଏବଂ ଓଡ଼ିଶାର ପୁରପଲ୍ଲୀରେ ସୋମନାଥ ବ୍ରତପାଳନ ପ୍ରତି ନାରୀମାନଙ୍କର ଅଧିକ ଶ୍ରଦ୍ଧା ଥିବାରୁ ଏହି ବ୍ରତକଥାର ବିଭିନ୍ନ ସଂସ୍କରଣ ହୋଇ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ବ୍ୟବହୃତ ହୋଇ ଆସୁଅଛି । ମାତ୍ର କେଉଁଥିରେ କଥାକାରଙ୍କର ପରିଚୟ ନାହିଁ ।

ବର୍ତ୍ତମାନ 'ସୋମନାଥ ବ୍ରତକଥା'ର ଯେଉଁ ପ୍ରକାଶିତ ସଂସ୍କରଣ ଦେଖିବାକୁ ମିଳେ, ତହିଁରେ 'କ୍ରିୟା' ର ସଂଯୋଜନ ପ୍ରାପ୍ତ ଆଧୁନିକ ଓଡ଼ିଆ ଭାଷାରେ କ୍ରିୟାର ବ୍ୟବହାର ପରି । ଉଦାହରଣ ସ୍ୱରୂପ 'ପଚ୍ଛାରିଲେ' ପରି କ୍ରିୟାର ବ୍ୟବହାର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିରଳ । 'ପୁଚ୍ଛିଲେ', 'ପୁଚ୍ଛାକଲେ' ବା 'ପ୍ରଶ୍ନକଲେ' ର ପ୍ରୟୋଗ ଅଧିକ ସୁଲଭ । 'ବ୍ରତ କରନ୍ତି' ରେ 'କରନ୍ତି' ର ବ୍ୟବହାର, 'ମନୋବାଞ୍ଛା ପୂର୍ଣ୍ଣ ହୁଏ' ରେ 'ହୁଏ' ର ବ୍ୟବହାର ଅପେକ୍ଷାକୃତ ଆଧୁନିକ । ମାତ୍ର 'କ୍ରିୟାପଦ' ବ୍ୟବହାରରେ ଏହି ଆଧୁନିକତା ପ୍ରତି ଦୃଷ୍ଟି ଦେଇ 'ସୋମନାଥ ବ୍ରତ କଥାର' ଭାଷା ବିଚାର କଲେ, ବିଚାର ଯୁକ୍ତିଯୁକ୍ତ ହେବନାହିଁ ।

ଏହି ବ୍ରତ କଥାରେ 'କାପୁଡ଼' ପରି ଏକ ପ୍ରାଚୀନ ଶବ୍ଦ ବ୍ୟବହୃତ । 'କାପୁଡ଼' ମୂଳ ସଂସ୍କୃତ 'କାର୍ପାସ' (କପା) ଶବ୍ଦ ସହିତ ସଂପୃକ୍ତ ହେଲେ ମଧ୍ୟ ଏବଂ ଏହି ମୂଳ ଶବ୍ଦରୁ ବଙ୍ଗଳାରେ 'କାପୋଡ଼' ଏବଂ ହିନ୍ଦୀରେ 'କପଡ଼ା' ଶବ୍ଦର ସୃଷ୍ଟି ହୋଇଥିଲେ ମଧ୍ୟ 'କାପୁଡ଼' ପରି କେତେକ ଶବ୍ଦର

ବ୍ୟବହାର ଓଡ଼ିଆ ସାହିତ୍ୟରେ ବିରଳ । ଏକପକ୍ଷରେ ଓଡ଼ିଶାରେ ମୁସଲମାନ ଶାସନର ପ୍ରତିଷ୍ଠା ପରେ ଓଡ଼ିଶାର ସାମାଜିକ ଜୀବନର ଭାଷା ବ୍ୟବହାରରେ ଯାବନିକ ଶବ୍ଦର ପ୍ରବେଶ ଏବଂ ଅନ୍ୟ ପକ୍ଷରେ ବଙ୍ଗଳା ଦେଶ ସହିତ ଓଡ଼ିଶା ଏକ ହୋଇଥିବା ସମୟରେ, ଓଡ଼ିଆ ଭାଷାରେ ବଙ୍ଗଳା ଶବ୍ଦର ବ୍ୟବହାର ପ୍ରତି କାରଣ ରୂପେ ଉପଲବ୍ଧ ହୁଏ । ଅବଶ୍ୟ ଏହି ଯୁକ୍ତିକୁ ପ୍ରମାଣ ସହିତ ଦୃଢ଼ ଭାବରେ ପ୍ରତିଷ୍ଠିତ କରିହେବ ନାହିଁ । ମାତ୍ର ଏହା ଏକ ଆନୁମାନିକ ବିଷୟର ଏବଂ ଏ ବିଷୟରୁ ଏକାବେଳକେ ଭ୍ରାନ୍ତପଦ ବୋଲି କହିବା ମଧ୍ୟ ସମୀଚୀନ ହେବନାହିଁ ।

ସୋମନାଥ ବ୍ରତ କଥାରେ ନଗ୍ର (ନଗର), ଶରୀର କ୍ଷମା ହେଲେ (ଶରୀର ଆରୋଗ୍ୟ ହେଲେ), ଆପଣ ରଜା ହୋଇଲ (ନିଜେ ରଜା ହେଲେ), କୁଟଣା ମୂଲ (ଧାନ କୁଟିବାରୁ ମିଳିବା ମୂଲ), ଅପଙ୍ଗ (ଅଙ୍ଗହୀନ), ଦୋଳୀରେ ଚଞାଇବା (ଦୋଳିରେ ଝୁଲାଇବା) ପ୍ରଭୃତି ପ୍ରାଚୀନ ଶବ୍ଦ ଓ ବାକ୍ୟାଂଶର ପ୍ରୟୋଗ ବ୍ରତକଥାର ପ୍ରାଚୀନତାର ପରିଚୟ ଦିଏ ।

ଏହି ବ୍ରତକଥାରେ 'ରାଣୀ ସଲଜ୍ଜିତରେ ନଦରୁ ଫେରି ଆସିଲେ' ପରି ବାକ୍ୟାଂଶରେ 'ସଲଜ୍ଜିତରେ' ପରି ପ୍ରୟୋଗ ପ୍ରତି ଦୃଷ୍ଟି ପଡ଼େ । 'ସଲଜ୍ଜିତରେ' ଶବ୍ଦ ଅପେକ୍ଷାକୃତ ପ୍ରାଚୀନ, ଏଥିରେ ସନ୍ଦେହ ନାହିଁ । କାରଣ 'ସଲଜ୍ଜିତ' ପଦରେ 'ରେ'ର ପ୍ରୟୋଗ ଆଧୁନିକ ଓଡ଼ିଆ ଗଦ୍ୟଭାଷାରେ ପ୍ରାପ୍ୟ ନାହିଁ କହିଲେ ଚଳେ । ସେହିପରି 'ଝିଙ୍ଗାସି' ଶବ୍ଦ (ଯାହାର କି ପ୍ରଚଳନ ଶାରଳା ମହାଭାରତରେ ରହିଅଛି, ଏବଂ 'ଖୋକାଏଦନ'

(ଯେଉଁ ପ୍ରକାର ପ୍ରୟୋଗ ୧୫୫ । ୧୬୫ ଶତାବ୍ଦୀର ମାଦଳା ପାଞ୍ଜି ଭାଷାରେ ଦେଖିବାକୁ ମିଳେ) ସୋମନାଥ ବ୍ରତକଥାର ପ୍ରାଚୀନତାର ସ୍ୱାକ୍ଷର ବହନ କରେ ।

ଏହିପରି ବିଭିନ୍ନ ଦିଗରୁ ବିଚାରକଲେ, 'ସୋମନାଥ ବ୍ରତକଥା' ପ୍ରାଚୀନତା ଓ ଆଧୁନିକତାର ଏକ ସମନ୍ୱୟ ରକ୍ଷା କରିଥିଲା ପରି ମନେହୁଏ ।

## ସୋମନାଥ ବ୍ରତକଥାର ଶୈଳୀ ଓ ଆଧୁନିକ ଗଳ୍ପ :-

ସୋମନାଥ ବ୍ରତକଥା ଗଳ୍ପ ସାହିତ୍ୟର ଅନ୍ତର୍ଗତ । ମାତ୍ର ଏହାର ଶୈଳୀ ଆଧୁନିକ ଗଳ୍ପ ଠାରୁ ସଂପୂର୍ଣ୍ଣ ଭିନ୍ନ ।

ପାର୍ବତୀ ଓ ମହାଦେବଙ୍କ କଥୋପକଥନରେ ଏହି ବ୍ରତକଥାଟି ପ୍ରକାଶିତ ହୋଇଅଛି । ଗଳ୍ପ ରଚନାର ଏହି ପ୍ରଣାଳୀ ପ୍ରାଚୀନ କଥାକାରମାନେ ଗ୍ରହଣ କରିଅଛନ୍ତି । ଏ ପ୍ରକାର ଗଳ୍ପ ବସ୍ତୁତଃ ଶ୍ରୋତାମାନଙ୍କ ଲଗି ଉଦ୍ଦିଷ୍ଟ । ତେଣୁ ଏହି କଥୋପକଥନର ଶୈଳୀ ଅଧିକ ଆନନ୍ଦଦାୟକ ହେଉଥିବା ବୋଲି ମନେହୁଏ । ପାର୍ବତୀ ପ୍ରଶ୍ନ କଲାବେଳେ, ସେ ପ୍ରଶ୍ନପ୍ରତି ଶ୍ରୋତାଙ୍କର ଧ୍ୟାନ ଯିବାବେଳେ, ମହାଦେବଙ୍କର ଉତ୍ତର କ ପ୍ରକାରର, ସେଥିପ୍ରତି ମଧ୍ୟ ଶ୍ରୋତା ସମ୍ୟକ ଚେତନ ରହିବା ସ୍ୱାଭାବିକ । ଶାରଳା ମହାଭାରତର ବିଭିନ୍ନ 'ହରଣ ବୃତ୍ତାନ୍ତ'ରେ ଏହିଧାରା ଗୃହୀତ ହୋଇଅଛି । ଏ ପରିଲକ୍ଷିତ ଉପାଖ୍ୟାନ, କଥା ଆଦି ସଂସ୍କୃତ ସାହିତ୍ୟରେ କ୍ଷିତେ ପଦେ ଦଶ ଗଳ୍ପର ଗଠନରେ ଲେଖା ହୋଇଥିବାର ଜଣାପଡ଼େ । ଗଳ୍ପ ରଚନାର ଏହି ଧାରା

୧୮ ଶ ଶତାବ୍ଦୀ ର ସାହିତ୍ୟକ ବ୍ରଜନାଥ ବଡ଼ ଜେନଙ୍କର 'ଚତୁର ବିନୋଦ' ପର୍ଯ୍ୟନ୍ତ ଦେଖାଦେଇଅଛି । ବସ୍ତୁତଃ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଚୀନ ସାହିତ୍ୟର ଏହି ଧାରା ଗଡ଼ିଆସିଛି ବୋଲି ଆମ୍ଭେମାନେ ଧରିଥାଉଁ । ୧୯ଶ ଶତାବ୍ଦୀର ପ୍ରକ୍-କାଳରୁ ଓଡ଼ିଆ ଗଦ୍ୟ ଭାଷା ଓ ସାହିତ୍ୟରେ ଆଧୁନିକତା ସ୍ଥାନ ନେଇଅଛି ।

ଆଧୁନିକ ଗଳ୍ପର ଗଠନଠାରୁ ସୋମନାଥ ବ୍ରତକଥାର ଗଠନ ସମ୍ପୂର୍ଣ୍ଣ ଭିନ୍ନ । ସୋମନାଥ ବ୍ରତ କଥାର ଆଭିମୁଖ୍ୟ ଶିବଙ୍କର ମହାତ୍ମ୍ୟ ପ୍ରକଟନ କରିବା । ସୋମନାଥ ବ୍ରତରେ ଶିବ, ଦେବୀ ପାର୍ବତୀଙ୍କୁ ସୋମନାଥ ବ୍ରତର ବୈଶିଷ୍ଟ୍ୟ ବୁଝାଇଅଛନ୍ତି । ତେଣୁ ଶିବଙ୍କର ମୁଖରେ ହିଁ ସୋମନାଥ ବ୍ରତ କଥା ପ୍ରକାଶପାଇଛି । ଏହି ବ୍ରତକଥାର ଘଟଣା ବୈଚିତ୍ର୍ୟ ଅଥବା ଉତ୍କଣ୍ଠା ପ୍ରତି ଲେଖକଙ୍କର ଦୃଷ୍ଟି ନାହିଁ । କାରଣ ବୈଚିତ୍ର୍ୟ ପ୍ରକାଶ କରିବା ବା ଗଳ୍ପରେ ଉତ୍କଣ୍ଠା ବଜାୟ ରଖିବା ପ୍ରତି ସେ ସଚେତନ ନୁହନ୍ତି । ତାଙ୍କର ଲକ୍ଷ୍ୟ ହେଲା ସୋମନାଥ ବ୍ରତର ବୈଶିଷ୍ଟ୍ୟ ପ୍ରକାଶ କରିବା ଏବଂ ସେହି ସୂତ୍ରରେ ଶିବଙ୍କର ମହାତ୍ମ୍ୟ ବର୍ଣ୍ଣନା କରିବା । ତେଣୁ ଗଳ୍ପଟି ମୂଳରୁ ଶେଷ ପର୍ଯ୍ୟନ୍ତ ବର୍ଣ୍ଣନାତ୍ମକ । ଓଡ଼ିଶାର ପୁରୁ ପଲ୍ଲୀରେ ଯୁଗଯୁଗ ଦେଇ ଆଈମା, ବୁଢ଼ୀମାଙ୍କ କଣ୍ଠରେ ବଞ୍ଚି ରହିଥିଲା ଭକ୍ତି, ଉଦ୍ଦେଶ୍ୟ-ପ୍ରଧାନ ଏହି ବ୍ରତକଥା ।

ସୋମନାଥ ବ୍ରତ କଥାରେ ଆଉରି ଏକ ଶୈଳୀ ଆମର ଦୃଷ୍ଟି ଆକର୍ଷଣ କରେ । ତାହା ହେଉଛି ସଂପ୍ରସାରିତ ଭାଷାର

ବ୍ୟବହାର । ଆଧୁନିକ ଗଦ୍ୟ ଲେଖକ ସଂକୋଚିତ ଭାଷାରେ ନିଜର ଭାବର ପ୍ରକାଶ କରିବାକୁ ଆଗ୍ରହୀ । ଏଥିରେ ଶବ୍ଦ ବ୍ୟବହାରରେ ମିତବ୍ୟୟିତା *(Economy of Words)* ପ୍ରତି ଆଧୁନିକ ଗଦ୍ୟ ଲେଖକ ଦୃଷ୍ଟି ଦେଇଅଛନ୍ତି । ମାତ୍ର ସୋମନାଥ ବ୍ରତ କଥାରେ ଏଥି ପ୍ରତି ସମ୍ୟକ ଦୃଷ୍ଟି ଦିଆଯାଇ ନାହିଁ । ଉଦାହରଣ ସ୍ୱରୂପ ବ୍ରତକଥାର ଆରମ୍ଭରେ, ନିମ୍ନଲିଖିତ କିୟଦଂଶ ଲକ୍ଷ୍ୟ କରିବାର କଥା । :—

"ଦର୍ଶନ ସାର ବାହୁଡ଼ି ଆସିବା ବେଳେ ପାଟଳୀ ନଗ୍ର ରାଜା ବୀର ବିକ୍ରମଙ୍କ ଦ୍ୱାରରେ ପ୍ରବେଶ ହୋଇ ତାହାଙ୍କ ଦ୍ୱାରୀକି କହିଲେ କି, ଆମ୍ଭେମାନେ ଆସିଅଛୁ ବୋଲି ତୁମ୍ଭେ ରାଜାଙ୍କୁ ଜଣାଅ । ଦ୍ୱାରୀ ଯାଇ ରାଜାଙ୍କୁ ଜଣାଇଲା ଯେ, "ହେ ଦେବ, ସୋମନାଥଙ୍କ ଷାଠିଏ ଜଣ କାପୁଡ଼ିଆ ଆସି ସିଂହ ଦ୍ୱାରରେ ବସି ତୁମ୍ଭରେ ଜଣାଇବା ନିମନ୍ତେ ପଠାଇଅଛନ୍ତି ।" ଏହା ଶୁଣି ରାଜା ଆଜ୍ଞା ଦେଲେ ଯେ ସେମାନଙ୍କୁ ଭିତରକୁ ଘେନିଆସ । ଦ୍ୱାରପାଳ ଯାଇ କାପୁଡ଼ିଆମାନଙ୍କୁ କହିଲା ଯେ, ତୁମ୍ଭେମାନେ ଭିତରକୁ ଆସ ।"

ଉଲ୍ଲିଖିତ ଗଦ୍ୟାଂଶଟି ଆଧୁନିକ ଶୈଳୀରେ ଅତି ସଂକ୍ଷିପ୍ତ ହୋଇପାରିଥାଆନ୍ତା ଏବଂ ସେ ମଧ୍ୟରେ ସମସ୍ତ ଭାବ ପ୍ରକାଶିତ ହୋଇପାରିଥାନ୍ତା; ମାତ୍ର ଭାଷାର ସଙ୍କୋଚନ ପ୍ରତି ସେ କାଳର ଲେଖକ ଯତ୍ନଶୀଳ ନଥିଲେ ବୋଲି ମନେ ହୁଏ । ଏହାର ପ୍ରଧାନ କାରଣ ହୋଇପାରେ ଯେ, ଏ ପ୍ରକାର

ରଚନା ଶ୍ରୋତାଙ୍କ ନିମନ୍ତେ ମୁଖ୍ୟତଃ ଉଦ୍ଦିଷ୍ଟ । ତେଣୁ ଶ୍ରୋତାମାନଙ୍କ ନିମନ୍ତେ ଅନେକ ସମୟରେ ଭାବର ବା ବର୍ଣ୍ଣନାର ପୁନରୁକ୍ତିର ଆବଶ୍ୟକ ହୋଇଥାଏ । ବେଳେ-ବେଳେ ସେମାନେ ଅମନଯୋଗୀ ହୋଇ ଗୋଟିଏ ବର୍ଣ୍ଣନା ପ୍ରତି ଧ୍ୟାନ ନ ଦେଇ ପାରିଲେ, ଠିକ ତହିଁ ପରେ ପରେ ଥିବା ବର୍ଣ୍ଣନା ଶୁଣି, ପ୍ରକୃତ ସ୍ଥଳର ସଂପୃକ୍ତି ସ୍ଥିର କରିପାରନ୍ତି ।

ସୋମନାଥ ବ୍ରତକଥାର ଆରମ୍ଭରେ ଯେପରି କୌତୁହଳ ନାହିଁ, ତହିଁର ପରିଣତିରେ ମଧ୍ୟ କୌତୁହଳ ନାହିଁ । ରାଜା କୁଷ୍ଠ ରୋଗାକ୍ରାନ୍ତ ହୋଇ ରାଜ୍ୟତ୍ୟାଗ କରିଛନ୍ତି ଏବଂ ପରେ ଶିବଙ୍କର ଅପାର କରୁଣାରୁ ରୋଗମୁକ୍ତ ହୋଇ ରାଜ୍ୟକୁ ଫେରି ଆସି ପୁଣି ରାଜ୍ୟ ଶାସନ କରିଛନ୍ତି । ମନ୍ତ୍ରୀ ସର୍ମାଗ୍ରହା ରାଜାଙ୍କ ଅନୁପସ୍ଥିତିରେ ଅତ୍ୟନ୍ତ ପ୍ରତାପୀ ହୋଇ ନିଜର ସୀମା ଲଙ୍ଘନ କରିଅଛନ୍ତି । ତେଣୁ ଦୁଷ୍ଟ ପ୍ରତି ଉପଯୁକ୍ତ ଶାସ୍ତି ବିଧାନ କରିବାରେ ଗଳ୍ପରେ କାବ୍ୟିକ ନ୍ୟାୟ (*Poetic Justice*) ରକ୍ଷାକ ଯାଇଅଛି । ବସ୍ତୁତଃ ଏହି ନ୍ୟାୟର ପ୍ରତିଷ୍ଠା କରିବା ପ୍ରାଚୀନ ସାହିତ୍ୟର ଆଭିମୁଖ୍ୟ ଥିଲା । ଏ ସୃଷ୍ଟିରେ ପାପ, ପୁଣ୍ୟ, ଉଭୟର ଲୀଳା ଦେଖିବାକୁ ମିଳୁଥିଲେ ହେଁ ଏବଂ ଅନେକ ସମୟରେ 'ପାପ' ସର୍ବଗ୍ରାସୀ ହେବାକୁ ବସିଥିଲେ ହେଁ, ଚରମ ପରିଣତିରେ ପୁଣ୍ୟର ଜୟ ଏବଂ ପାପର କ୍ଷୟ ଯେ ନିଶ୍ଚିତ, ଏହି ନ୍ୟାୟ ହିଁ ପ୍ରାଚୀନ କବି ତାଙ୍କର ସାହିତ୍ୟରେ ପ୍ରତିଷ୍ଠା କରିଅଛନ୍ତି । ସୋମନାଥ ବ୍ରତ କଥାର ଲେଖକ ମଧ୍ୟ ପ୍ରାଚୀନ ସାହିତ୍ୟର ଏହି ଆଭିମୁଖ୍ୟ ରକ୍ଷା କରିଅଛନ୍ତି ।

ସୋମନାଥ ବ୍ରତକଥା ଶ୍ରୋତାଙ୍କୁ ଆନନ୍ଦ ଦିଏ । ଏହାର ପ୍ରମାଣ ଜଙ୍ଗଲର ସୁଦୂର ପଲ୍ଲୀରେ ଏହି ବ୍ରତକଥା ପ୍ରତି ଆଦର । ପାଠକକୁ ସୋମନାଥ ବ୍ରତକଥା, ପ୍ରାଚୀନ ଗଳ୍ପ ପଠନର ଆନନ୍ଦ ଦିଏ । ଆଲୋଚକ ଦୃଷ୍ଟିରେ ପ୍ରାଚୀନତା ଓ ଆଧୁନିକତାର ଅପୂର୍ବ ସମନ୍ୱୟଭାବ ଦେଖି ବିସ୍ମିତ ହୁଏ । ବସ୍ତୁତଃ ଏହି ବସ୍ତୁସ୍ଥିତି ବେଳେ ବେଳେ ସୋମନାଥ ବ୍ରତ କଥାକୁ ପ୍ରାଚୀନ ସାହିତ୍ୟ ରୂପେ ପ୍ରତିଷ୍ଠିତ କରିବା ଦିଗରେ ଆଲୋଚକ ମନରେ କୁଣ୍ଠା ସୃଷ୍ଟି କରେ । ମାତ୍ର ଏ ସମସ୍ତ ଭିତରେ ସୋମନାଥ ବ୍ରତ କଥାର ସାମାଜିକ ମୂଲ୍ୟ ଓ ସାହିତ୍ୟିକ ମୂଲ୍ୟ ଲକ୍ଷ୍ୟ କରିବା କଥା । ଓଡ଼ିଶାର ସାମାଜିକ ଜୀବନରେ, ଏହି ବ୍ରତକଥ ବହୁତ ଶ୍ରୋତା ଜନତାକୁ ଯେପରି ମନ୍ତ୍ରମୁଗ୍ଧ କରାଉଛି, ସାହିତ୍ୟିକଙ୍କୁ ସେହିପରି ଅଧିକରୁ ଅଧିକ ଆଲୋଚନା କରିବା ପାଇଁ ଆଗ୍ରହାନ୍ୱିତ କରିଅଛି ।

## ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶରେ ପ୍ରଦତ୍ତ

## 'ସୋମନାଥ ବ୍ରତ କଥା'

ପରମେଶ୍ୱର କହନ୍ତି, ଦେବୀ ଶୁଣନ୍ତି । ଶୁଣ ଦେବୀ ପାର୍ବତୀ ! ମାଳବ ବୋଲି ଦେଶ, ତହିଁ ପାଟଳ ବୋଲି ନଗ୍ର, ତହିଁ ଶୀର ବନ୍ଧମ ଜିତ ବୋଲି ରଜା, ନାମ ଜାମନ୍ଦା ପ୍ରଧାନୀ । ସେ କଟକର ଅନେକ ମହିମା । ଘରେ ଘରେ ସୁବର୍ଣ୍ଣ କଳସ ବସାନ୍ତି । ଧବଳମନ୍ଦିର ପୁର, ଅତି ସୁନ୍ଦର । ସୁବର୍ଣ୍ଣ କଳସ ଉପରେ ନେତପତାକା ଉଡ଼ନ୍ତି । ଚଉଦାଣି ହାଟ ବସାନ୍ତି । ମେଢ଼, ମଣ୍ଡପ, ଅଟାଳି, ଦେଉଳ, ଜଗତୀ,

କୂପ, ପୁଷ୍କରିଣୀ, ଅଭିଜନନ୍ତୁ ଲୋକେ ବସାନ୍ତି । ହସ୍ତୀଙ୍କର ଢଣ୍ଟାରବ, ଘୋଡ଼ାଙ୍କର ଖିରିଖିର ରବ, ପଦ ଭଟ୍ଟଙ୍କର ମୁଖରବ । ଚଉରଙ୍ଗ ବଳ ନବକୋଟି ଭଣ୍ଡାର । ଅନେକ ରାଜାମାନେ ସେ ରାଜାଙ୍କୁ ଖଟନ୍ତି । ଏମନ୍ତ ସମସ୍ତ ପ୍ରବେଶ, କାପୁଡ଼ିମାନେ ସୋମନାଥ ଦେବଙ୍କୁ ଦେଖି ଅଛନ୍ତି । ସେହିନ ସୋମନାଥ ଦେବଙ୍କ ବ୍ରତ । ସେ କାପୁଡ଼ିମାନେ ସୋମନାଥ ଦେବଙ୍କୁ ଦେଖି ବାହୁଡ଼ି ଅଇଲେ । ତଙ୍କ ପଛେ ନଗ୍ରେ ପ୍ରବେଶ ହେଲେ । ଯାଇ ଉଦୟରାଜନ୍ତ ରାଜା ସିଂହଦ୍ୱାରେ ପ୍ରବେଶ ହେଲେ । ଦ୍ୱାରପାଳଙ୍କୁ ବୋଇଲେ ତୁମ୍ଭେ ଯାଇଁ ରାଜାଙ୍କୁ ଜଣାଅ । ବୋଲ ସୋମନାଥ ଦେବଙ୍କର ଷାଠିଏ କାପୁଡ଼ି ଆସି ଅଛନ୍ତି । ସିଂହଦ୍ୱାରେ ଆସି ରହିଅଛନ୍ତି । ଦ୍ୱାରପାଳ ଯାଇଁ ଜଣାଇଲା ରାଜାଙ୍କୁ । ହେ ଦେବ ! ଶିବବ୍ରତୀ ଷାଠିଏ କାପୁଡ଼ି ସିଂହଦ୍ୱାରେ ରହିଅଛନ୍ତି । ରାଜା ଶୁଣି ବୋଇଲେ ଭିତରକୁ ଆସନ୍ତୁ । ଦ୍ୱାରପାଳ ଯାଇଁ କହିଲା—ଆହେ କାପୁଡ଼ିମାନେ ରାଜାଙ୍କର ଆଜ୍ଞା ହେଲା ତୁମ୍ଭେ ଭିତରକୁ ଯିବ । ଷାଠିଏ କାପୁଡ଼ି ଭିତରେ ପ୍ରବେଶ ହେଲେ । ରାଜା କାପୁଡ଼ିଙ୍କି ଦେଖି ବଡ଼ ସନ୍ତୋଷ ହେଲେ । ସମସ୍ତ କାପୁଡ଼ିଙ୍କି ଆସନ ଦେଲେ । କାପୁଡ଼ିମାନେ ବୋଇଲେ ଆମ୍ଭେ ଭୋକା ହୋଇଅଛୁଁ । ଆମ୍ଭଙ୍କୁ ଭିକ୍ଷା ଦିଅ । ରାଜା ବୋଇଲେ କ୍ଷଣେ ବିଶ୍ରାମ କର । ରାଜା ମହାସୁଆରକୁ ରାଇ ଆଜ୍ଞା ଦେଲେ ବେଗେ ପାକ ସିଦ୍ଧକର । ମହାସୁଆର ପାକ କଲେ । କାପୁଡ଼ିମାନେ ସ୍ନାହାନ କରିଗଲେ । ବେଗେ ଯୋଗାଇଦେଲେ । କାପୁଡ଼ିମାନେ ଭୁଞ୍ଜି ବସିଲେ । ସମସ୍ତେ ମିଷ୍ଟାନ୍ନ ଭୋଜନ କଲେକ । କାପୁଡ଼ି-ମାନେ ଭୋଜନ ସାରି ଆଚମନ କଲେ । କାପୁଡ଼ିମାନଙ୍କୁ ସମୁକ ତାମ୍ବୁଳ ଦେଲେ । କାପୁଡ଼ିମାନେ ବୋଇଲେ ଆମ୍ଭେ ତାମ୍ବୁଳ ନ

ଭୁଞ୍ଜୁ କନ୍ଦାଫଳ ଖାଇବୁଁ । ତାହା ଶୁଣି ରଜା ବଡ଼ ସନ୍ତୋଷ ହେଲେ । କାପୁରୁଷମାନେ ବସ୍ତର ବୋଇଲେ, ହେ ରାଜନ ! ବହୁତ ଗଉରବ କଲୁ, ଆମ୍ଭେ ତୁମ୍ଭଙ୍କୁ ବ୍ରତେକ ଦେବୁଁ । ଏଠାରୁ ତୁମ୍ଭଙ୍କୁ ଆୟୁଷ ଯଶଶ୍ରୀ ହୋଇବ । ରଜା ବୋଇଲେ ସୋମନାଥ ବ୍ରତ କେମନ୍ତେ କରି କରିବା । କାପୁରୁଷମାନେ ସୋମନାଥ ବ୍ରତ କହିବାକ । ଶୁଣ ହେ ନୃପତି, ଭାଦ୍ରବମାସ ଶୁକ୍ଳପକ୍ଷ ଷଷ୍ଠୀ ଦିନରେ ବ୍ରତ ହେନମାକ । ଘର ଶବ ବଚବ କରିବାକ । ପୀଢ଼ା ଉପରେ ପାଟ୍ଟେଉ ଗୋଟିଏ ରଖିବାକ । ତହିଁ ଉପରେ ସୃଷ୍ଟିକର ଲିଙ୍ଗ ଗୋଟିଏ ସ୍ଥାପିବାକ । ଲିଙ୍ଗରେ ଅକ୍ଷତ ଦେବ । ସୂତାରେ କୁଷ୍ମାଣ୍ଡ ଫୁଲ, କୁମ୍ଭୁଣ୍ଡା ଫୁଲ ଦେଇ ପୂଜା କରିବ । ଦଶଗୋଟି ତଣ୍ଡୁଳ, ଦଶନାଣ୍ଡ ଦୁବ ଦେଇ ପୂଜା କରିବ । ଦଶଖିଅ ଦଶଗୋଟି ଗଣ୍ଠି ପାଡ଼ିବାକ । କଥା ଶୁଣି ସୋମନାଥଙ୍କୁ ନୈବେଦ୍ୟ ଦେବ । ପ୍ରସାଦ ହେନମ । ବ୍ରତ ହସ୍ତେ ବାନ୍ଧିବ । ପୁଣି ଆଶ୍ୱିନ ମାସ ଅପରାଜିତା ଦଶମୀ ଦିନରେ ବ୍ରତ ପୂରାଇବାକ । ଅପରାଜିତା ଦଶମୀ ଦିନରେ ଅରୁଆ ଚାଉଳ ମାଣେ ହେନମାକ । ନଡ଼ିଆ, ମରିଚଖଣ୍ଡ, ମହୁ ପୂରାଇବାକ, ପିଠା ଦଶଗୋଟି କରିବାକ । ପୀଢ଼ାରେ ଶୁକ୍ଳବସ୍ତ୍ର ପାଡ଼ିବାକ । ସଷ୍ଟିକାଲିଙ୍ଗ ସ୍ଥାପିବାକ । ଅଥବା ବାଲୁକା ଲିଙ୍ଗ ସ୍ଥାପିବାକ । ପୂଜା କରିବାକ । ପିଠା ଗୋଟିଏ ସୋମନାଥ ଦେବଙ୍କୁ ଦେବାକ । ବ୍ରତ ପରମେଶ୍ୱରଙ୍କୁ ସମର୍ପିବାକ । ପିଠା ପାରଣା କରିବାକ । ଯେ ମନୋବାଞ୍ଛା ସେ ସିଦ୍ଧ ହୋଇଛ । ରଜା ଶୁଣି ବୋଇଲେ ଆହେ କାପୁରୁଷମାନେ ! ଏ ବ୍ରତ କଲେ ଅମ୍ଭଙ୍କୁ ଲଜ ଅଟଇ କିଣ । ସଂସାରରେ ବୋଲିବେ ଶିର ବନ୍ଧପାଳିତ ରଜା ହେଲ ମାଣିକେ

ଓଷା କରଇ । ଏତେ ବୋଲି ବ୍ରତ ନିନ୍ଦା କଲେ, ନାସ୍ତି କଲେ । କହନ୍ତି ପଶୁପତି ଦେଖି ପାଦକ୍ଷ ଏତେ ବଚନ ଶୁଣି କାପ୍ରଡ-ମାନେ ମୁଖ ମଳିନକରି ଉଠିଗଲେ । ରାଜ ନିନ୍ଦା କରନ୍ତେଣ ତହୁଁ ପରମେଶ୍ୱରଙ୍କ ଆସନ ଟଳିଲା । ପରମେଶ୍ୱର ଧ୍ୟାନରେ ଜାଣିଲେକ ବୀର ବନ୍ଧମାଳିତ ରଜା ନିନ୍ଦା କଲେକ । ରାଜା ବ୍ରତ ନିନ୍ଦା କରନ୍ତେ କୁଷ୍ଠବ୍ୟାଧି ହୋଇଲାକ । ରାଜାଙ୍କୁ ବଡ଼ ତ୍ରାସ ଲଗିଲାକ । ରାଜା ବିସ୍ମୟ ହୋଇ ବୋଇଲେକ ମୁଁ ଦେଶାନ୍ତର ଯିବଇଁ । ମୋ ଦେହରେ କୁଷ୍ଠ ବ୍ୟାଧି ହୋଇଲାକ, ଆବର ରାଜ୍ୟରେ ମୋର କି କାର୍ଯ୍ୟ । ପାତ୍ର ବୋଇଲା ରାଜ୍ୟ କାହାକୁ ଦେଇ ଯିବ । ରାଜା ବୋଇଲେ ତୁ ରାଜ୍ୟ କରୁଥିବୁ । ମୋ ରାଣୀମାନଙ୍କୁ ସୁରକ୍ଷା କରୁଥିବୁ । ମୋହୋ ଶରୀର ଯେବେ କ୍ଷମା ହୋଇବ ତେବେ ମୁଁ ରାଜ୍ୟ କରିବି । ଭଲ ନୋହୁଣ୍ଟି ଯେବେ ମରିବି । ତେବେ ରାଜ୍ୟରେ କି କାର୍ଯ୍ୟ । ତୁ ମୋ ରାଣୀମାନଙ୍କୁ ସୁରକ୍ଷା କରୁଥିବୁ । ଯେମନ୍ତ ଦୁଃଖ ନ ପାନ୍ତି । ଏତେ ବୋଲି ରାଜା ବେଟାକୁ ସଙ୍ଗତେ କରି ଅନେକ ଦ୍ରବ୍ୟ ଘେନି ବସ୍ତ୍ରେ ହୋଇ ଦେଶାନ୍ତର ଗଲେକ·····
ଇତ୍ୟାଦି···ଇତ୍ୟାଦି ।



# ସୋମନାଥ ବ୍ରତ କଥା

## ଗଣେଶାୟ ନମଃ

ଶ୍ରୀ ସତ୍ୟଯୁଗେ ବଂଗଧ ନାମ ସମ୍ବତ୍ସରର ଉତ୍ତର ଖଣ୍ଡ କାଶିକ୍ଷେତ୍ର ବାଣରସି (୧) ନଗରର କପିଳାସ କନ୍ଦରେ ନୈଋତ କୋଣେ ମେରୁ କୋଟେ (୨) କୌଶିସି ସମୟେ ଭାଦ୍ରମାସ ଶୁକ୍ଳପକ୍ଷ ସମସ୍ତ ଦେବତାମାନେ ପ୍ରବେଶ ହୋଇଲେ। ବହୁତ ଗହଳ ହେଉଥିବାର ଦେଖି ପାର୍ବତୀ ଈଶ୍ୱରଙ୍କୁ ପଚାରିଲେ— "ହେ ପ୍ରଭୁ ! ଆଜ ବଡ଼ ଉତ୍ସବର ଦିବସ ପ୍ରାୟ ଦେଖା ଯାଉ-ଅଛୁ ।"

ଈଶ୍ୱର କହିଲେ, 'ଆଜ ଶ୍ରୀ ସୋମନାଥ ବ୍ରତ ଅଟେ । ଏ ବ୍ରତ ତିନିପୁରର ଲୋକ କରନ୍ତି । ତୁମ୍ଭେ ଏ ବ୍ରତ କର ।'

ପାର୍ବତୀ ବୋଇଲେ---'ଏ ବ୍ରତ କେଉଁ ବିଧାନରେ ହୁଏ ଓ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ତିନିପୁରର ଲୋକେ ତୁମ୍ଭକୁ ସେବା କରି ଅଳ୍ପ ସେବାଦ୍ୱାରା ବହୁତ ଫଳ କିପରି ପାଆନ୍ତି ତାହା କହିବା ହେଉ ।'

( ଈଶ୍ୱର ଉବାଚ )

'ଶୁଣ ଦେବୀ ପାର୍ବତୀ କହନ୍ତି ପଶୁପତି । ସାମ ବେଦରୁ ଏ ବ୍ରତ ଉଦିତ । ଏ ବ୍ରତ ଯେଉଁମାନେ କରନ୍ତି ତିନିପୁର ମଧ୍ୟରେ ତାହାଙ୍କ ମନବାଞ୍ଛା ପୂର୍ଣ୍ଣ ହୁଏ ।'

ତାହା ଶୁଣି ପାର୍ବତୀ ବୋଇଲେ—'ଏ ବ୍ରତ ଆମ୍ଭେ କରିବା। ଏହାର ବିଧାନ କହିବା ହେଉ।'

ଏହା ଶୁଣି ଈଶ୍ୱର ବୋଇଲେ—'ସେହି ବ୍ରତ ମହିମା କହୁଛୁ ଶୁଣ।'

'ମାଳବ ବୋଲି ଏକ ଦେଶ ଥିଲା। ସେହି ଦେଶର ପାଟଳୀ ନଗରର ରାଜାଙ୍କ ନାମ ବୀର ବିକ୍ରମ (୩) ଅଟେ। ସେ ରାଜା ମହା ପ୍ରତାପୀ। ତାଙ୍କ ଘରେ ଘରେ ସୁବର୍ଣ୍ଣ କଳସ ସ୍ଥାପିତ ଏବଂ ଧବଳମୟ ହେତୁ ବଡ଼ ସୁନ୍ଦରମୟ ଓ ନବରମାନ ନେତ ପତାକା ଦ୍ୱାରା ଅତ୍ୟନ୍ତ ସୁଶୋଭିତ ଦେଖାଯାଆନ୍ତି।

---

* ଶ୍ରୀଶ୍ରୀ ଶଙ୍କର ପାର୍ବତୀ ଭ୍ୟାଂ ନମୋ ନମଃ। କପିଳାସ ପର୍ବତେ ବିଜେ ଜଟାଧାରୀ। ସୋମନାଥ ଦେବଙ୍କ ଦାକ୍ଷିଣରେ ଥିଲେ ନନ୍ଦିକେଶ୍ୱର ସହିତ ଗଣପତି। ଏମନ୍ତେ ବହୁତ ଅପ୍ସରା ବିଦ୍ୟାଧରୀଏ ନୃତ୍ୟ ଗୀତ ବାଜା ବାଦ୍ୟ, ନାନା ବେଦଗାନ କଲେ। ଭଜନ କେଇଛନ୍ତି। ଏମନ୍ତ ସମୟରେ ପାର୍ବତୀ କରଯୋଡ଼ି, ପଚାରିଲେ—'ହେ ଦେବ! କଥାଏ ପଚାରିବି ମତେ ସ୍ୱରୂପ ଆଜ୍ଞା ହୋଇବ।' ଈଶ୍ୱର କହିଲେ—ଯାହା କହିବାର କହ। ପାର୍ବତୀ କହିଲେ—ତୁମ୍ଭଙ୍କୁ ତିନିପୁରର ଲୋକେ ସେବାକରି। ଅଳ୍ପ ସେବାରେ ବହୁତ କାର୍ଯ୍ୟ ପାଇଁ କ କ ସେ ମୋତେ ଆଜ୍ଞା ହେଉ। ଈଶ୍ୱର କହିଲେ—ପାର୍ବତୀ, ସାବଧାନରେ ଶୁଣ ମୋର ସୋମନାଥ ବ୍ରତ ବୋଲି କଥାଏ ଅଛି × × × ଈଶ୍ୱର କହନ୍ତି ପାର୍ବତୀ ଶୁଣନ୍ତେ। ମଞ୍ଚପୁର ନାମେ ଏକ ନଗ୍ର, ତହିଁକି ବୀର ବିକ୍ରମ ବୋଲି ରଜା, ସେ ରଜା ବଡ଼ ପ୍ରତାପୀ।

ସେହି ନଗରରେ ରାଜରାଜଅପି ହାଟ ବସାଇ—ହସ୍ତୀଙ୍କର ଘଣ୍ଟାଧ୍ୱନି, ଅଶ୍ୱଙ୍କର ହ୍ରେଷାଧ୍ୱନି, ପଦାତିକ ଚତୁରଙ୍ଗ ବଳଙ୍କର ମୁଖରବ ଧ୍ୱନି ଏବଂ ବାଜନ କୋଟି ଭଣ୍ଡାର ଓ ଅନେକ ରାଣୀ ନର୍ତ୍ତକୀ ହୋଇ ଥାଆନ୍ତି ।

କେତେ ଦିନ ପରେ ସୋମନାଥଙ୍କ ଦର୍ଶନ ନିମନ୍ତେ ପ୍ରଦେଶ କାପଡ଼ିମାନେ (୪) ପ୍ରବେଶ ହୋଇଲେ । ସେଦିନ ସୋମନାଥ-ଦେବଙ୍କ ବ୍ରତ । ଦର୍ଶନ ସାରି କାପଡ଼ିଆମାନେ ବାହୁଡ଼ି ଆସିବା ବେଳେ ପାଟଳୀ ନଗ୍ର (୫) ରାଜା ବୀର ବିକ୍ରମଙ୍କ ଦ୍ୱାରେ ପ୍ରବେଶ ହୋଇଲେ । ରାଜାଙ୍କ ଦ୍ୱାରୀକି କହିଲେ କି, 'ଆମ୍ଭେମାନେ ଆସିଅଛୁ । ତୁମ୍ଭେ ତାଙ୍କୁ ଜଣାଅ ।' ଦ୍ୱାରୀ ଯାଇ ରାଜାଙ୍କୁ ଜଣାଇଲା, 'ହେ ଦେବ, ସୋମନାଥଙ୍କ ଗୋଟିଏ ଜଣ କାପଡ଼ିଆ ଆସି ସିଂହଦ୍ୱାରରେ ବସିଅଛନ୍ତି । ତୁମ୍ଭରେ ଜଣାଇବା ନିମନ୍ତେ ପଠାଇ ଅଛନ୍ତି ।' ଏହା ଶୁଣି ରାଜା ଆଜ୍ଞା ଦେଲେ, ସେମାନଙ୍କୁ ଆମ୍ଭ ନିକଟ ଘେନି ଆସ ।

ଦ୍ୱାରପାଳ ଯାଇ କାପଡ଼ିଆମାନଙ୍କୁ କହିଲା ଯେ 'ତୁମ୍ଭେମାନେ ଭିତରକୁ ଆସ ।' ଏହା ଶୁଣି କାପଡ଼ିଆମାନେ ଭିତରକୁ ଯାଆନ୍ତେ ରାଜା ଦେଖି ବିଶେଷ ଆନନ୍ଦ ହୋଇ ସେମାନଙ୍କୁ ବସିବା ନିମନ୍ତେ ଆସନ ଦେଲେ । କାପଡ଼ିଆମାନେ କହିଲେ—'ଆମ୍ଭେ-ମାନେ କ୍ଷୁଧାର୍ତ୍ତ ହୋଇଅଛୁ । ଆମ୍ଭଙ୍କୁ କିଛି ଭୋଜନ ଦିଅନ୍ତୁ ।' ରାଜା ଏହା ଶୁଣି ମନ୍ତ୍ରୀ ଓ ସୁଆରଙ୍କୁ (୬) ଡକାଇ ପାକ ସିଦ୍ଧ କରାଇଲେ । କାପଡ଼ିଆମାନେ ସ୍ନାନ ସାରି ଦଧି, ଘୃତ, ସାକର କଦଳୀରେ ଭୋଜନ କଲେ । ଭୋଜନ ସାରି ଆଚମନ କଲେ ।

(୭) ରାଜା ଭୋଜନ ଶେଷକୁ କର୍ପୂର, ତାମ୍ବୁଳ (୮) ଅଣି ଦେଲେ । ତାହା ଦେଖି କାପୁଡ଼ିଅମାନେ କହିଲେ କି 'ଅମ୍ଭେମାନେ ଏମାନ ଭୁଞ୍ଜୁ ନାହିଁ । କଷାଫଳ ଭୁଞ୍ଜୁ ।' ରଜା ସନ୍ତୋଷ ହୋଇ କଷାଫଳ ଅଣାଇଦେଲେ । ଅକ୍ଷତ ବେଭାର କଲେ ।'

କାପୁଡ଼ିଆମାନେ ବୋଇଲେ—'ଆମ୍ଭେ ତୁମ୍ଭଙ୍କୁ ଗୋଟାଏ ଦ୍ରବ୍ୟ ଦେବୁ, ତାହା ତୁମ୍ଭର ବଡ଼ ଶ୍ରେୟ (୯) ହୋଇବ ।'

ରାଜା ବୋଇଲେ କି ଦ୍ରବ୍ୟ ଦେବ ।

କାପୁଡ଼ିଆମାନେ କହିଲେ—'ଆମ୍ଭର ଗୋଟିଏ ବ୍ରତ ଅଛି ତାହା ତୁମ୍ଭଙ୍କୁ ଦେବା ।'

ରାଜା ବୋଇଲେ—'ବ୍ରତ କି ପ୍ରକାର ତାହାର ବିଧାନ କହିବା ହେଉନ୍ତୁ ।'

କାପୁଡ଼ିଆମାନେ କହିଲେ—'ଭାଦ୍ରବମାସ ଶୁକ୍ଳପକ୍ଷ ଷଷ୍ଠୀଦିନ ଗୋଟିଏ ଘର ଲିପିକରି ପିଢ଼ା ଗୋଟିକୁ ଶୋଧ କରିବ । ସେହି ପିଢ଼ା ଉପରେ ପାଟବସ୍ତ୍ର ଦେଇ ସ୍ଫଟିକ ଲିଙ୍ଗ ସ୍ଥାପନ କରିବ, କଖାରୁ ଫୁଲ ଦଶଗୋଟି, ଉଆଳୁଆଳ ଦଶଗୋଟି, ଦୁବ ଦଶ ନାଡରେ ପୂଜା କରିବ । ଦଶଖିଅ ସୂତାକୁ ତ୍ରିଗୁଣ (୧୦) କରିବ । ସେଥିରେ ଦଶଗୋଟି ଗଣ୍ଠି ପକାଇ ଶ୍ରୀ ସୋମନାଥଙ୍କୁ ନୈବେଦ୍ୟ କରିବ । ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ଅପରାଜିତା ଦିନ ଓଷା ଉଜାଇଁବ । ଉଆଳୁଆଳ ମାନେ ଦୁଧରେ ଡୁବାଇବ । ତାଙ୍କୁ କାଁହିଁ ଚ.ନାକଳ ଦେନ୍ତୁ ଦହଳାନରେ ରଖିବ । ମନ୍ତ୍ର, ମରିଚ, ଅଦା,

ଛେନାଖଣ୍ଡ, କଦଳୀ, ନଡ଼ିଆ, କର୍ପୂର, ମୁଗ, ଜବ ଆଦି ଦଶପୁର ଦେଇ ଦଶଗୋଟି ମଣ୍ଡା ପ୍ରସ୍ତୁତକରି ଶ୍ରୀ ସୋମନାଥଙ୍କୁ ନୈବେଦ୍ୟ ଦେବ । ପୂଜା ସାରି ବ୍ରତ ହାତରେ ବାନ୍ଧିବ । ବ୍ରତ ପାଳନକରି ଯାହା ବାଞ୍ଛା କରିବ ତାହା ସିଦ୍ଧ ହେବ ।'

ଏହା ଶୁଣି ରଜା କହିଲେ 'ମୁଁ ଯଦି ଏହି ବ୍ରତ କରେ ତା'ହେଲେ ମୋର ନିନ୍ଦା ହେବ ଓ ଲୋକେ କହିବେ କି ରାଜା ନୀଚ ଗୃହଜନ ମଣ୍ଡଳରେ ଓଷା କରୁଅଛନ୍ତି ।' ଏହା କହି ବ୍ରତକୁ ନିନ୍ଦାକଲେ । ମହାଦେବ କହୁଅଛନ୍ତି । ପାର୍ବତୀ ଦେବୀ ଶୁଣୁ ଅଛନ୍ତି । ଏ ବଚନ ଶୁଣି କୁପୁତ୍ରଆମାନେ ମୁଖ ମଳିନକରି ଉଠିଲେ ।

ବ୍ରତ ନିନ୍ଦା କରନ୍ତେ ପରମେଶ୍ୱରଙ୍କ ଆସନ ଟଳିଲା । ଜାଣିଲେ, ପାପିଷ୍ଠ ମୋର ବ୍ରତ ନିନ୍ଦାକଲା । 'ତା ଦେହରେ କୁଷ୍ଠବ୍ୟାଧି ହେଉ' ବୋଲି କହନ୍ତେ ରଜା ଦେହରେ କୋଷ୍ଠବ୍ୟାଧି ହେଲା । ରାଜାଙ୍କୁ ମହା ପ୍ରମାଦ ପଡ଼ିଲା । ବୋଇଲେ 'ମୋହର ରାଜ୍ୟରେ କାର୍ଯ୍ୟ ନାହିଁ ।'

ତାହାର ମନ୍ତ୍ରୀର ନାମ ସର୍ମାଗ୍ରହା । ଏହା ଶୁଣି ମନ୍ତ୍ରୀ କହିଲା ଯେ—'ରାଜ୍ୟ କାହାକୁ ଦେଇ ଯିବ ?'

ରଜା ବୋଇଲେ—'ରାଜ୍ୟ ତୁମ୍ଭେ ସମ୍ଭାଳି ରାଣୀମାନଙ୍କୁ ରକ୍ଷା କରିବ । ମୋ ଶରୀର କ୍ଷମା ହେଲେ (୧୧) ମୁଁ ରାଜ୍ୟକୁ ଆସିବି । ଏତେ ବୋଲି ପୁଅ ବୀରଭଦ୍ରଙ୍କୁ ସଙ୍ଗରେ ନେଇ ରାଜା ଦେଶାନ୍ତର ହୋଇଗଲେ । ବାଟରେ ଯାହା କଣ୍ଟ୍ରୁ ରହି ଥିଲା ତାହା ଉଜାସୂତ-

ମାନେ ଛଡ଼ାଇନେଲେ । ରାଜା ରାଜ୍ୟ ବିଚ୍ଛେଦ ହୋଇ ବୁଲିଲେ । ଖାଇବାକୁ କିଛି ମିଳିଲା ନାହିଁ । ବଡ଼ ଦୁଃଖ ପାଇଲେ । ବ୍ୟାଧି ଦେହରେ ପ୍ରବଳ ହେଲା । ହାତ ଗୋଡ଼ ଛୁଟିପଡ଼ିଲା । ଏହା ଦେଖି ଶ୍ରୀ ସୋମନାଥ ମାୟା କଲେ ।

ଏକ ଅରଣ୍ୟ ଭିତରେ ଅପବିତ୍ର ଭୂମି ବୋଲି ମଣ୍ଡପ ଏକ ଅଛି । ତାହାର ତିନି କୋଣରୁ ତୃଣମାନେ ବାତ ଘାତରେ ଉଡ଼ିଯାଉ ଅଛନ୍ତି । ଏକ କୋଣରେ ସମ୍ଭୂତ ହୋଇଅଛନ୍ତି । ରାଜା ସେ ମାୟା ମଣ୍ଡପରେ ଥାଆନ୍ତି । ପୁଅ ଭିକ୍ଷାମାଗି ପୋଷଇ । ଏମନ୍ତେ ସମୟେ ସମୀରଦ୍ୱାଙ୍କ ଉଗର ଦେଶ ବୁଲିଯାଇଥିଲା । ପଥରେ ବୀରଭଦ୍ରକୁ ଦେଖିଲା । ଉଗର ପଚାରିଲା 'ତୁମ୍ଭେ କିଏ ?'

ବୀରଭଦ୍ର କହିଲେ—'ମୁଁ ବୀର ଭକ୍ତମଙ୍କର ପୁଅ । ତାଙ୍କୁ କୁଷ୍ଠବ୍ୟାଧି ହେବାରୁ ସେ ଆମମାନଙ୍କୁ ଘେନି ଦେଶାନ୍ତର ଅଇଲେ । ଆମ୍ଭ ନିକଟରେ କିଛି ରତ୍ନ ଥିଲା । ତାହା ଡକାୟତମାନେ ଛଡ଼ାଇ ନେଲେ । ସେଥି ହେତୁରୁ ମୁଁ ଭିକ୍ଷା ମାଗିକରି କୁଟୁମ୍ବ ପ୍ରତି-ପୋଷଣ କରୁଅଛି ।' ଏହା ଶୁଣି ଉଗର (୧୨) ରାଜାଙ୍କ ନିକଟକୁ ଯାଇ ଦେଖନ୍ତେ ରାଜା ଅପଙ୍ଗ (୧୩)ହୋଇ ଅଛନ୍ତି । ହାତ ଗୋଡ଼ ଛୁଡ଼ି ପଡ଼ିଅଛି । ମାଛି ବେଢ଼ି ଅଛନ୍ତି । ଦେଖି ବସ୍ମୟ ହୋଇ ଆସି ସମୀରଦ୍ୱାଙ୍କୁ କହିଲେ କି, ରାଜ୍ୟରେ ଘୋର ଅନ୍ୟାୟ ହେଲା । ରାଜା ଦେଶାନ୍ତର ଗଲେ । ତସ୍କର (୧୪) ଧନ ଛଡ଼ାଇନେଲେ । ହାତ ଗୋଡ଼ ଛୁଡ଼ି ପଡ଼ିଲାଣି । ଚଳି ପାରୁ ନାହାନ୍ତି । ପୁଅ ଭିକ୍ଷାମାଗି ପୋଷୁଛନ୍ତି ।'

ସମୀଗ୍ରହା ଉଗରଠାରୁ ଏହା ଶୁଣି କହିଲେ—'ମୁଁ ଏଥର ଏକାଙ୍ଗ ଚକ୍ରବର୍ତ୍ତୀ ହେଲି ।' ଏମନ୍ତ ବୋଲି ମନରୁ ଭୟ ଗ୍ଳାଡ଼ିଲା । ଆପଣେ ରଜା ହୋଇଲା । ତା ଉଆସ ଗ୍ଳାଡ଼ି ରାଜାଙ୍କ ନଗରରେ ରହିଲା ।

ମା ଓ ଝିଅ (ପୂର୍ବତନ ରାଜାଙ୍କ ପତ୍ନୀ ଓ କନ୍ୟା) କୁଡ଼ିଆ ଖଣ୍ଡିକରେ ରହିଲେ । ସେହି ଖଣ୍ଡିଆ କୁଡ଼ିଆରେ ପଥ ଦିନ ସରୁ ନ ଥାଏ । ଝିଅ ଧାନ କୁଟଇ । ରାଣୀ ସୂତା କାଟଇ । କାଟଣା ମୂଲରେ (୧୫) ଲୁଣ ମାଲପା (୧୬) କରନ୍ତି । କୁଟଣ ମୂଲରୁ (୧୭) ଘୃତ ତଅଣ କରନ୍ତି । ଏମନ୍ତ ଦୁଃଖରେ ଥାଆନ୍ତି ।

କହନ୍ତି ପଶୁପତି, ଶୁଣନ୍ତି ଦେବୀ ପାର୍ବତୀ । ପୁନରପି ଅଶ୍ୱିନ ମାସ, ଶୁକ୍ଳପକ୍ଷ ଦଶମୀ ଅପରାଜିତା ଦିନ କାପୁଡ଼ିଆମାନେ ସେ ନଗ୍ରକୁ ଅଇଲେ । ଶୁଣିଲେ, ରାଜା ଦେହରେ ବ୍ୟାଧି ହୋଇ ହାତ ଗୋଡ଼ ଛୁଡ଼ି ପଡ଼ିଲାଣି । କାପୁଡ଼ିଆମାନେ ଶୁଣି ମୁଖ ମଳିନ-କରି ପାଟଳି ନଗ୍ରର ହାଟରେ ସାମଗ୍ରୀ କରିବା ସମୟରେ କେତେକ ବ୍ରାହ୍ମଣୀ ଆସି ପ୍ରବେଶ ହୋଇ ପଚାରିଲେ କି,— 'ଆପଣ କେଉଁ ବ୍ରତ ନିମନ୍ତେ ସାମଗ୍ରୀ କରୁ ଅଛନ୍ତି ?'

କାପୁଡ଼ିଆମାନେ କହିଲେ ଯେ, ଶ୍ରୀ ସୋମନାଥ ବ୍ରତ ନିମନ୍ତେ ।

ବ୍ରାହ୍ମଣୀମାନେ କହିଲେ—'ସେ ବ୍ରତ କେଉଁ ବିଧାନରେ ହୁଏ ?'

କାପୁଡ଼ିଆ କହିଲେ—'ଭାଦ୍ରବ ମାସ, ଶୁକ୍ଳପକ୍ଷ, ଷଷ୍ଠୀଦିନ ଗୋଟିଏ ଘରକୁ ଉତ୍ତମ କରି ଲିପିବ । ପିଢ଼ା ଗୋଟିଏ ରଖି କରିବ । ତହିଁ ଉପରେ ପାଟବସ୍ତ୍ର ଦେବ । ସୁବର୍ଣ୍ଣ ଲିଙ୍ଗ ନୋହିଲେ ମୃତ୍ତିକା ଲିଙ୍ଗ ସ୍ଥାପନ କରିବ । ଦଶଗୋଟି ରଙ୍କୁଣ୍ଡା ଫୁଲ, ଦଶଗୋଟି ଜଆ ତଣ୍ଡୁଳ, ଦଶନାଡ଼ ଦୁବ, ଦଶଖିଅ ସୂତା ତ୍ରିଗୁଣ କରି ବଳିବ, ଗଣ୍ଠି ଦଶଗୋଟି ଦେଇ ଶ୍ରୀ ସୋମନାଥ ଦେବଙ୍କୁ ନୈବେଦ୍ୟ ଦେବ ।' ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ଅପରା-ଜିତା ଦିନ ମାଣେ ଜଆ ଚାଉଳକୁ ଦୁଧରେ ଭିଜେଇବ । ନଡ଼ିଆ ଛେନା ଆଦି ଦଶ ରକମ ପୁର ଦେଇ ଦଶଗୋଟି ମଣ୍ଡା କରି ଶ୍ରୀ ସୋମନାଥଙ୍କୁ ନୈବେଦ୍ୟ ଦେଇ ବ୍ରତ ଉଝାଇବ (୧୮) । ଯାହା ମନବାଞ୍ଛା କରିବ ତାହା ପୂରଣ ହେବ । ଏହା ଶୁଣି ବ୍ରାହ୍ମଣୀମାନେ ବ୍ରତ ଆରୋପଣ (୧୯) କରନ୍ତେ ରାଜାଝିଅ ମଧୁମଣି ଜାଣି ରାଣୀଙ୍କୁ କହିଲେ କି, 'ବ୍ରାହ୍ମଣୀମାନେ ଶ୍ରୀ ସୋମନାଥଙ୍କ ବ୍ରତ କରୁଅଛନ୍ତି । ଆମ୍ଭେ ସେ ବ୍ରତ କରିବା ।'

ରାଣୀ ବୋଇଲେ—'କି କି ସାମଗ୍ରୀ ଲାଗଇ ?' ମଧୁମଣି ସମସ୍ତ କହିଗଲେ । ଏହା ଶୁଣି ରାଣୀ କହିଲେ କି ହଁ ପୂର୍ବରେ ତ କେତେକ କାପୁଡ଼ିଆ ରାଜାଙ୍କୁ ଏହି ବ୍ରତ କରିବାକୁ କହିଥିଲେ । ରାଜା ବ୍ରତ ନିନ୍ଦା କରିବାରୁ ବୋଧହୁଏ କୁଷ୍ଠରୋଗୀ ହୋଇ ଦେଶାନ୍ତରୀ ହୋଇଗଲେ । ମଲେ କି ବଞ୍ଚିଲେ ନ ଜାଣିଲି । ଆମ୍ଭେ ଦୁଃଖରେ ପଡ଼ି କଷ୍ଟ ଭୋଗ କରୁଅଛୁ । ଶ୍ରୀ ସୋମନାଥଙ୍କ କୃପାରେ ଉପାର୍ଜିତ ହୋଇ ପାରିବ କି ।

ଝିଅ ବୋଇଲେ—'ଏ ଦ୍ରବ୍ୟ କାହୁଁ ଆଣିବା ?'

ରାଣୀ ବୋଇଲେ 'ସମୀରହା ଯାଏ ଦିବା ।'

ଝିଅ ବୋଇଲେ—'ତୁମ୍ଭେ କମ୍ପା ଯିବ, ମୁଁ ଯାଇ ମାଗି ଆଣିବି ।'

ରାଣୀ ବୋଇଲେ—'ନାଁ, ସେ ମୋତେ ମହାଦେବଙ୍କ ବୋଲି ଚାହିଁ ପାରିବ କି ନାହିଁ । ମୁଁ ଯାଏ ।' ଏତେ ବୋଲି ରାଣୀ ସମୀଗ୍ରହା ନିକଟରେ ପ୍ରବେଶ ହୁଅନ୍ତେ ଦେଖନ୍ତି ଯେ ସମୀଗ୍ରହା ଦୋଳିରେ ପହୁଡ଼ି (୨୦) ହେଉଅଛି । ପରିବାରମାନେ (୨୧) ପୁଷ୍ପ ଚନ୍ଦନ ଯୋଗାଉଅଛନ୍ତି । ରାଣୀ ତଳେ ଥାଇ ବୋଇଲେ —'ମୋତେ କିଛି ଉଷା ସାମଗ୍ରୀ ଦେଇ ପାରିବେ କି ?

ପରିବାରମାନେ ସମୀଗ୍ରହାଙ୍କୁ କହିଲେ, 'ମହାଦେବଙ୍କ ଉଷା ସମଗ୍ରୀ ମାଗି ଆସିଛନ୍ତି । ଦୁଧ, ନଡ଼ିଆ, ଛେନା, କଦଳୀ ଜଳ ଗୁଡ଼ଜଳ ପ୍ରଭୃତି ମାଗୁଅଛନ୍ତି । ଦେବା କି ନାହିଁ ?'

ସମୀଗ୍ରହା କହିଲା—ଏହାଙ୍କୁ ଯାହା ଦେବା, ଭିକାରୀ (୨୨) ଜଣଙ୍କୁ ଦେଲେ କାରଣ ହେବ । ଏହାକୁ ଦେଲେ କଣ ହେବ ? ରାଣୀ ହୋଇଥିଲେ ବୋଲି କ'ଣ ହିଙ୍ଗାସି (୨୩) ଆସିଅଛି ।

ଏହା ଶୁଣିକରି ରାଣୀ ସଲଜ୍ଜିତରେ ନବରୁ ଫେରି ଆସିଲେ । ଶ୍ରାବଣ ମାସର ବର୍ଷାଧାର ପରି ଚକ୍ଷୁରୁ ଲୁହ ଗଳୁଅଛି । (୨୪) ମନେ ମନେ ଶ୍ରୀ ସୋମନାଥଙ୍କୁ ସୁମରଣା (୨୫) କରି ଝିଅ ନିକଟରେ ପ୍ରବେଶ ହୋଇଲେ । ଝିଅକୁ ସମସ୍ତ ଜଦନ୍ତ (୨୬) କହିଲେ । ସମୀଗ୍ରହା ରାଣୀ ମୋତେ ଦେଖି ଦୋଳି ତଳକୁ ନ ଓହ୍ଲାଇଲା । ସମୀଗ୍ରହା ଦୋଳୀ ତଳରେ ମଧ୍ୟ ଠିଆକରିଦେଲା

ନାହିଁ । ଏତେ କହି ଶୋକଭରରେ ଶ୍ରୀ ସୋମନାଥଙ୍କୁ ସୁମରଣା କଲେ—ହେ ସୋମନାଥ ଗୋସାଇଁ ! ମୋହର ମନ୍ଦୀହୋଇ ପାଦତଳେ ଖଟୁଥିଲା । ତୁମ୍ଭ ଦୟାରୁ ତାହାର ଦାସୀମାନେ ମୋତେ ଦଣ୍ଡେ (୨୭) ଦେଇ ଚଳେ ନ ଦେଖି ପେଲି ପକାଇଲେ । ଏମନ୍ତ ଭାବନା କରି ମନଦୁଃଖେ ବସିଅଛନ୍ତି । ଏମନ୍ତବେଳେ ବ୍ରାହ୍ମଣୀମାନେ ତାହାର ମନଭାବ ଜାଣିପାରିଲେ । 'ମହାଦେଈ ମନଦୁଃଖ କାହିଁପାଇଁ ।'

ରାଣୀ ସମସ୍ତ ବିଷୟ କହି କୋଇଲେ—'ମୋର ଶ୍ରୀ ସୋମନାଥଙ୍କ ବ୍ରତ । କିନ୍ତୁ ଓଷା ସାମଗ୍ରୀ ତୁମ୍ଭେ ଦେଇ ପାରିବ କି ?' ବ୍ରାହ୍ମଣୀମାନେ ଓଷା ସାମଗ୍ରୀ (୨୮) ଦେଲେ । ରାଣୀ ସମସ୍ତ ସଞ୍ଚା (୨୯) ରଖି ସରୋବରକୁ ସ୍ନାନ କରିବାକୁ ଗଲେ । (୩୦) ଲେଙ୍ଗୁଡ଼ (୩୧) ଖଣ୍ଡିଏ କୂଳରେ ଶୁଖାଇଦେଲେ । ଶ୍ରୀ ସୋମନାଥଙ୍କୁ ସୁମରଣା କଲେ । ତାଙ୍କ ଆରତ (୩୨) ଦେଖି ଶ୍ରୀ ସୋମନାଥ କୃପାକରି ଶୁଖିଥିବା ଲେଙ୍ଗୁଡ଼କୁ ହରଣ କରି ରତ୍ନଜଡ଼ିତକରି ପାଟବସ୍ତ୍ର (୩୩) ଖଣ୍ଡିଏ ରଖିଦେଇଅଛନ୍ତି ! ସ୍ନାନସାରି ଦେଖିଲାବେଳକୁ ରତ୍ନଜଡ଼ିତ ପାଟଖଣ୍ଡି ଥୁଆହୋଇଛି । ଲେଙ୍ଗୁଡ଼ ଖଣ୍ଡିକ ନାହିଁ, ସେ ବ୍ରାହ୍ମଣୀମାନଙ୍କୁ ପଚାରନ୍ତେ ସେ କହିଲେ—'ସୋମନାଥ ତୁମ୍ଭଙ୍କୁ କୃପାକଲେ । ତୁମ୍ଭେ ଏହା ବସ୍ତ୍ର ପିନ୍ଧି ହାତରେ ବ୍ରତକୁ ବାନ୍ଧ ।'

ରାଣୀ କୋଇଲେ—'ଯେବେ ମୋର ରଜା ସୁସ୍ଥରେ ଆସି ତାଙ୍କ ରାଜ୍ୟରେ ଆସି ପ୍ରବେଶ ହେବାର ଶୁଣିବି, ତେବେ ପ୍ରସାଦ

ବ୍ରତ ହାତରେ ବାନ୍ଧିବ । ଏ ମୋର ପ୍ରସାଦ ହୋଇ ରହିଲା ।’ ଏହା କହି କୁଡ଼ିଆ ଘରେ ପ୍ରବେଶହେଲେ । ଶ୍ରୀ ସୋମନାଥ ପ୍ରସନ୍ନ ହୋଇ କହିଲେ—‘ଅପରାଜିତା ଧନ ତୁ ମୋର ବ୍ରତ କଲୁ । ତେଣେ ରଜାର ଗୋଡ଼ ହାତ କଅଁଳିଲାଣି । ଏବେ ତୁମର ସମସ୍ତ ଦୋଷ କ୍ଷମା ହେଲା । ତୁମେ ରାଜ୍ୟକୁ ଯାଅ ।’ ଏହା କହି ଅନ୍ତର୍ଦ୍ଧାନ ହୋଇ ତେଣେ ରାଜା ନିକଟରେ ପ୍ରବେଶ ହେଲେ । ରାଜା ସେ ସମୟରେ···ଅଚେତନ ଥିଲେ । ଦେଖି ଚେତନା ଲଭ କରି ପାଏ (୩୪) ପଡ଼ି ଶୋଇଲେ ! ଉଠିଲାବେଳକୁ ହାତ, ଗୋଡ଼ କଅଁଳ ପୂର୍ବପରି ତେଜବାନ ହୋଇଉଠିଲେ ।

ସୋମନାଥଙ୍କ ଆଜ୍ଞାରେ ବୃଷକୁ ସଙ୍ଗରେ ନେଇ ନିଜ ରାଜ୍ୟରେ ପ୍ରବେଶ ହୁଅନ୍ତେ ପଥରେ ପରଗୁଣୀମାନେ (୩୫) ଦର୍ଶନ କରି ଚରଣରେ (୩୬) ନେନି ଆସିଲେ । ଦେଖିଲାବେଳକୁ ନବରରେ ରାଣୀ ପ୍ରଭୃତି ନାହାନ୍ତି । ସମୀଗ୍ରହା ମନ୍ତ୍ରୀଙ୍କ ପଚାରିଲେ—‘ଆମ୍ଭର ରାଣୀ ପ୍ରଭୃତି ନାହାନ୍ତି ?’ ସେ କହିଲା—‘ସେ ତୁମ୍ଭର ଯିବା ସମୟରେ କେଣିକି ଯାଇଅଛନ୍ତି ମୁଁ ଜାଣେ ନାହିଁ । ରଜା କହିଲେ – ‘ସମସ୍ତେ ସୁଖର ସାଥୀ । ମୁଁ ତୋତେ ରାଜ୍ୟ ଦେଇଗଲି । ତୁ ମୋ ପରିବାର ବର୍ଗଙ୍କୁ ବଗଡ଼ା ଅନ୍ନ ଦଓଟି ଦେଇ ରଖିପାରିଲୁ ନାହିଁ । ସେମାନେ କେଉଁଠାରେ ଅଛନ୍ତି ଏବେ ନବରକୁ ଅଣାଅ ।’

ରାଣୀଙ୍କୁ ଦୂତ ଖୋଜିବାକୁ ଗଲେ । ଖୋଜିକରି ପାଇଲେ । ରାଣୀଙ୍କ ଗ୍ରାମରେ ଜଣାଇଲେ ଯେ, ମହିମା ରଜା ରାଜ୍ୟରେ ପ୍ରବେଶ ହେଲେଣି । ରାଣୀ କହିଲେ ତେବେ ମୋତେ ଗହଣରେ ନେଇ ଯାଆନ୍ତୁ ।

ରାଣୀଙ୍କଠାରୁ ଏମନ୍ତ ଶୁଣି ଦୂତମାନେ କାହୁଡ଼ି ରାଜାଙ୍କୁ ଜଣାଇଲେ । ରାଜା ଶୁଣି···ଣୀକ ଖେଦ ଅଇଲେ । ସମୀରଦ୍ରା ଯେତେ ଯେତେ ଅବସ୍ଥା ଦେଇଥିଲ ତାହା ରାଣୀ ରାଜାଙ୍କ ଆଗରେ ସମସ୍ତ କହିଲେ । 'ଥୋକାଏ ଦିନ (୩୭) ବଗଡ଼ା ଘୁଜଲ କୁଆଁଏ ଦେଇ ରଖିଥିଲ । ଆପଣଙ୍କ ଦୁର୍ଦ୍ଦଶା ଚରଙ୍କଠାରୁ ଶୁଣିପାଶ ଆମକୁ ନଗରରୁ ବାହାର କରିଦେଲ । କର୍ମକୁ ଆଦର ବ୍ରାହ୍ମଣ ଶାସନ ମଧ୍ୟରେ ରହିଲି । ଏମନ୍ତ କେତେ ଦିନ ପରେ ହାଟକୁ କାହୁଡ଼ିମାନେ ଓଷା ସାମଗ୍ରୀ କିଣିବାକୁ ଆସିଥିଲେ ଓ ବ୍ରାହ୍ମଣୀମାନଙ୍କୁ ଓଷାର ବିଧାନ ବୁଝାଉଥିବା ସମୟରେ ଝିଅ ମଧ୍ୟସ୍ଥ ଶୁଣି ମୋତେ କହିବାରୁ ଓଷାବିଧି ଭୁଆଇବା (୩୮) ନିମନ୍ତେ ସମୀରଦ୍ରା ହାଟକୁ ଗଲ । ସେ କହିଲ—ତୁମ୍ଭଙ୍କୁ ଯାହା ଦେବ ତାହା ଭିକାରୀ ଜଣକୁ ଦେଲେ ଭଲ ହେବ । ଏହା ଶୁଣି ମନ ସନ୍ତାପରେ ବସିଥିବା ସମୟରେ ବ୍ରାହ୍ମଣୀମାନେ ଆସି ଓଷା ସାମଗ୍ରୀ ଦେଇ ସ୍ନାନ ନିମନ୍ତେ ଖେଦିଗଲେ । ପୋଖରୀ କୂଳରେ ଖଣ୍ଡିଏ ଲେଙ୍କୁଡ଼ୀ କନାକୁ ଧୋଇ ଶୁଖାଇ ସ୍ନାନ କରିବାକୁ ଗଲ । ସ୍ନାନ ଅନ୍ତେ ଆସି ଦେଖିଲ ବେଳକୁ ତାହା ନ ଦେଖି ରତ୍ନଜଡ଼ିତ ପାଟବସ୍ତ୍ର ଖଣ୍ଡିଏ ଶୁଖାହୋଇଛି । ଏହା ଦେଖି ବ୍ରାହ୍ମଣୀମାନଙ୍କୁ ପଚାରିଲ । ସେମାନେ କହିଲେ ଯେ ତୁମ୍ଭ ଉପରେ ସୋମନାଥଙ୍କ ଦୟା ହେଲ । ତୁମେ ଏହାକୁ ପିନ୍ଧି ଓଷା ପୂଜ (୩୯) । ବ୍ରତ ଧାରଣ କର । ମୁଁ କହିଲି, ବ୍ରତକୁ ମାନୁଅଛି କିନ୍ତୁ ମୋର ସ୍ୱାମୀ ସୁସ୍ଥରେ ଅଛନ୍ତି କି ନା ନ ଜାଣିଲେ ପ୍ରସାଦ ସେବନ କରିବି ନାହିଁ । ଏହି ସମୟରେ ଶ୍ରୀ ସୋମନାଥ ଆସିକରି ମୋତେ କହିଲେ, "ତୋର ସ୍ୱାମୀ ସୁସ୍ଥରେ (୪୦) ଆସି ରାଜ୍ୟରେ ପ୍ରବେଶ ହେଲେଣି ।" ଏହା

ଶୁଣି ପ୍ରସାଦ ସେବନ କରି ବସିଥିଲ । ଏହି ସମୟରେ ଦୂତମାନେ ପ୍ରବେଶ ହେଲେ ।'

ରାଜା ଶୁଣି ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ ଓ ରାଣୀଙ୍କି ଘେନ ରାଜ୍ୟରେ ଅଭିଷେକ ହେଲେ । ଫଣା (୪୨) ଖୋଳାଇ ସମୀଗ୍ରହାର ବଂଶପାଳ ହେ ତାଳେ । ବ୍ରାହ୍ମଣୀମାନଙ୍କୁ ଦୋହର (୪୨) ଶାସନ ଦେଲେ । ଶ୍ରୀ ସୋମନାଥଙ୍କ କୃପାରୁ ରାଜା ରାଜୁତ୍ୱ କଲେ । ପ୍ରଜାମାନଙ୍କୁ କୁଶଳରେ ପାଳିଲେ । ଯେଉଁମାନେ ଯାହା ମନୋ-ବାଞ୍ଛା କରି ଏ ବ୍ରତ କରିବେ ସେମାନେ ଏହାର ଫଳ ପାଇ ମୁକ୍ତିଲାଭ କରିବେ । ଦେବାଦେବୀ ସମ୍ବାଦେ ଶ୍ରୀ ସୋମନାଥ ବ୍ରତ କଥା ଏହା ଜନପ୍ର ସମ୍ପୂର୍ଣ୍ଣ । ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ।

## ଶବ୍ଦ ଟିପ୍ପଣୀ

୧ । ବାଣରସି— ବାରାଣସି ।

୨ । ହେଟେ— ପର୍ବତରେ ।

୩ । ଗାର ବନ୍ଧନ— ପାଠାନ୍ତର ଗାର ବନ୍ଧମାଧବଙ୍କ (ପ୍ରାଚୀନ ଗଦ୍ୟ ପଦ ।ର୍ଥ) ।

୪ । କାପୁଡ—ବସ୍ତ୍ର ବ ଲୁଗା । ଏହି ଶବ୍ଦ ସଂସ୍କୃତ କାର୍ପାସ (କପା) ଶବ୍ଦ ସହିତ ସଂପୃକ୍ତ । ତେଣୁ କାର୍ପାସରୁ ଜାତ ଦ୍ରବ୍ୟ ଅର୍ଥାତ୍ ବସ୍ତ୍ର ପ୍ରଭୃତି ଯେଉଁମାନେ ବହପୁ କରନ୍ତି ସେମାନଙ୍କୁ 'କାପୁଡ' କୁହାଯାଉଥିଲ । ଏହି 'କାପୁଡ' ଶବ୍ଦ ସହିତ

ବଙ୍ଗଳାର ପ୍ରଚଳିତ 'କାପୋଡ଼୍' ଏବଂ ହିନ୍ଦୀର ପ୍ରଚଳିତ 'କପ୍‌ଡ଼ା' ଆଲୋଚ୍ୟ । କାପୁଡ଼ ଓ କାପଡ଼ଆ ଏକ ଅର୍ଥରେ ଏହି ବ୍ରତ କଥାରେ ବ୍ୟବହୃତ ହୋଇଅଛି ।

୫ । ପାଟଳା ନଗ୍ର—ପାଟଳୀ ନଗର (ପାଟଳୀପୁତ୍ର ନଗରୀ)

୬ । ସୁଆର—ସୂପକାର (ବେହେରିଆ—ଆଧୁନିକ ପ୍ରୟୋଗରେ ପୂଜାରୀ ବ୍ୟବହୃତ)

୭ । ଆଚମନ—ଖାଇସାରିବା ପରେ, ମୁହଁ ଧୋଇବା ।

୮ । ତାମ୍ବୁଳ—ପାନ

୯ । ଶ୍ରେୟ—ଶୁଭଦାୟକ

୧୦ । ନିର୍ଗୁଣ—ଉନଗୁଣ ('ଉନସରି'ର ମଧ୍ୟ ପ୍ରୟୋଗ ଅଛି)

୧୧ । ଶରୀର କ୍ଷମା ହେଲେ—ଦେହ ରୋଗମୁକ୍ତ ହେଲେ ।

୧୨ । ଉଗର—ଉଗର, ବାର୍ତ୍ତାବହ ।

୧୩ । ଅପଙ୍ଗ—ଅଙ୍ଗହୀନ ହୋଇଯିବା (କୁଷ୍ଠବ୍ୟାଧି ଯୋଗୁଁ ହସ୍ତପଦ ଛିନ୍ନ ହୋଇଯିବା । )

୧୪ । ତସ୍କର—ଡକାୟତ

୧୫ । କାଟଣା ମୂଲ—ସୂତା କାଟିବାପାଇଁ ମୂଲ ।

୧୬ । ମାଲପା—ତେଲ ।

୧୭ । କୁଟଣା ମୂଲ—ଧାନ କୁଟିବାପାଇଁ ମୂଲ୍ୟ ।

୧୮ । ଉଦ୍‌ଯାପିବ—ଉଦଯାପନ କରିବ (ପୂର୍ଣ୍ଣ କରିବ)

୧୯ । ଆରୋପଣ – ପ୍ରତିପାଳନ

୨୦ । ଦୋଳାରେ ପଞ୍ଚାଇ ହୋଇ—ଦୋଳାରେ ଝୁଲିବା ।

୨୧ । ପରବାସ—(ସାଧାରଣ ବ୍ୟବହାର—ପୋଇଲା ଖରବାସ)

୨୨ । ଭିକ୍ଷାସୀ—ଭିକ୍ଷୁକ ।

୨୩ । ଝିଙ୍କାସି—କଷ୍ଟକଥା କହିବା ନିମନ୍ତେ ।

୨୪ । ଲୁହ ଗ୍ରବୁଅଛି -- ଲୁହ ଝରୁଅଛି ।

୨୫ । ସୁମରଣା –ସ୍ମରଣ ।

୨୬ । ଉଦନ୍ତ—ବାର୍ତ୍ତା ।

୨୭ । ଦଣ୍ଡେ—କ୍ଷଣକ (ନିମେଷକ) ନିମିତ୍ତ ।

୨୮ । ଓଷା ସାମଗ୍ରୀ—ଓଷାରେ ବ୍ୟବହୃତ ହେଉଥିବା ଦ୍ରବ୍ୟ ।

୨୯ । ସଞ୍ଚା—ରାନ୍ଧିବାଲାଗି ଖାଦ୍ୟ ଉପାଦାନ ଓ ଅନ୍ୟାନ୍ୟ ଉପକରଣ ।

୩୦ । ସୁମରଣା—ସ୍ମରଣ ।

୩୧ । ଲେଙ୍ଗୁଡ଼—(ସାଧାରଣରେ 'ଲେଙ୍ଗୁଟି' ରୂପେ ବ୍ୟବହୃତ) ଛୁଣ୍ଡାଲୁଗା ।

୩୨ । ଆରତ—ଦୁଃଖ (ଆର୍ତ୍ତ ଶବ୍ଦରୁ)

୩୩ । ବସ୍ତ୍ର—ବସ୍ତ୍ର

୩୪ । ପାଏ—ପାଦରେ (ବଙ୍ଗଳା ଭାଷାରେ 'ପାଏ'ରେ ଅର୍ଥ ପାଦରେ) ।

୩୫ । ପରସ୍ବର—ସେବକ, ଦାସ, ଭୃତ୍ୟ ।

୩୬ । ଗହଣ — ସଙ୍ଗତ, ଏକଥ ।

୩୭ । ଥୋକାଏ ଦିନ — କେତେ ଦିନ, କିଛି ଦିନ ।

୩୮ । ଭିଆଇବା ନିମନ୍ତେ — ବିଧାନ କରିବା ନିମନ୍ତେ ।

୩୯ । ଓଷା ପୂରାଅ — ଓଷା ପୂରଣ କର, ଓଷା ପୂର୍ଣ୍ଣ (ସଂପୂର୍ଣ୍ଣ) କର ।

୪୦ । ସୁସ୍ଥରେ — ସୁସ୍ଥରେ, (ସୁସ୍ଥ ହୋଇ, ସୁସ୍ଥ ଶରୀରରେ)

୪୧ । ଖଣା — ଗାତ ( ଖଣା ଶବ୍ଦ ସମ୍ଭବତ ଖଣି ଶବ୍ଦ ଆଳୋଚ୍ୟ ) ।

୪୨ । ଦୋହଳ — ଦ୍ୱିଶାଖ ଥର (ଦୋହଳ ଶବ୍ଦ କେତେକ ବ୍ୟବହାରରେ ପ୍ରଚଳିତ ) ।

॥୦॥

---

ଭ୍ରମ ସଂଶୋଧନ—୧ମ ପୃଷ୍ଠାର ୨ୟ ପାଦ ୨ୟ ଧାଡ଼ିରେ 'ରନ୍' ବଦଳରେ 'ଗଲ୍' ଓ ୭ଷ୍ଠ ପୃଷ୍ଠାର ୧୦ମ ଧାଡ଼ିରେ 'ସୋମ' ବଦଳରେ 'ଗୋଇ' ପଢ଼ିବାକୁ ହେବ ।